# ଉତ୍କଳ ପ୍ରସଙ୍ଗ

ଜ୍ୟେଷ୍ଠ ୧୯୦୭ ଶକାବ୍ଦ ୪୧ ଭାଗ ୧୦ମ ସଂଖ୍ୟା ମଇ ୧୯୮୫


## ସମ୍ପାଦନା ମଣ୍ଡଳୀ

ନିର୍ଦ୍ଦେଶକ : ଶ୍ରୀ ରମାନାଥ ମହାନ୍ତି

ସମ୍ପାଦକ : ଶ୍ରୀ ଭୋଳାନାଥ ରାୟଗୁରୁ

ସହ ସମ୍ପାଦକ : ପ୍ରହରାଜ ସତ୍ୟନାରାୟଣ ନନ୍ଦ

ସହଯୋଗୀ ସମ୍ପାଦକ : ଶ୍ରୀ ବିଷ୍ଣୁ ମୋହନ ମହାପାତ୍ର

### ମୁଖ୍ୟ ସମ୍ପାଦକ

ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ

### ପ୍ରଚ୍ଛଦ ଶିଳ୍ପୀ

ଶ୍ରୀ ପ୍ରଦ୍ୟୁମ୍ନ କୁମାର ଦାସ



**ପ୍ରକାଶନ :** ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ୧୦.୦୦

ପ୍ରତି ଖଣ୍ଡ : ୧.୦୦

**ମୁଦ୍ରଣ :**
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ


**ଓଡ଼ିଶା ସରକାରଙ୍କ** ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠବୋଲି ଭାବିବା ଉଚିତ ନୁହେଁ ।

**'ଉତ୍କଳ ପ୍ରସଙ୍ଗ'** ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁକ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଉତ୍କଳ ପ୍ରସଙ୍ଗ

# ସୂଚୀପତ୍ର



ମଇ ଦିବସ ଉପଲକ୍ଷେ

# ମୁଖ୍ୟମନ୍ତ୍ରୀ
# ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ

# ବାର୍ତ୍ତା

"୧୯୮୫ ମଇ ଦିବସ ଉପଲକ୍ଷେ ମୁଁ ଓଡ଼ିଶାର ମଜ୍‌ଦୁର ଭାଇଭଉଣୀମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।"

"ପୃଥିବୀର ଶ୍ରମଜୀବୀ ଜନଗଣଙ୍କ ପାଇଁ ମଇ ପହିଲା ଏକ ମହତ୍ୱପୂର୍ଣ୍ଣ ସ୍ମରଣୀୟ ଦିବସ । ଶ୍ରମଜୀବୀ ଜନସାଧାରଣଙ୍କର ନ୍ୟାଯ୍ୟ ଅଧିକାର ହାସଲ କରିବା କ୍ଷେତ୍ରରେ ଏହା ଏକ ପ୍ରଧାନ ମାଇଲ ଖୁଣ୍ଟି, ସଂଗ୍ରାମର ଏକ ଜ୍ୱଳନ୍ତ ସ୍ମାରକୀ ।

"ଓଡ଼ିଶାର ଲୋକସଂଖ୍ୟାର ପ୍ରାୟ ଏକ-ତୃତୀୟାଂଶ ଶ୍ରମିକ ଶ୍ରେଣୀର ଲୋକ ଓ ଏମାନଙ୍କ ମଧ୍ୟରେ କୃଷି ଶ୍ରମିକଙ୍କ ସଂଖ୍ୟା ସର୍ବାଧିକ । ସାରା ଦେଶରେ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଲୋକଙ୍କ ମଧ୍ୟରୁ ଶତକଡ଼ା ୧୧ ଭାଗ ଶ୍ରମିକ ଥିବା ବେଳେ ଓଡ଼ିଶାରେ ମାତ୍ର ଶତକଡ଼ା ୭ ଭାଗ ଶ୍ରମିକ ଅଛନ୍ତି । ଏହାର କାରଣ ହେଉଛି, ଶିଳ୍ପ କ୍ଷେତ୍ରରେ ଓଡ଼ିଶାର ଅନଗ୍ରସର ଅବସ୍ଥା । ଶିଳ୍ପ କ୍ଷେତ୍ରରେ ଓଡ଼ିଶାକୁ ଏକ ଶ୍ରେଷ୍ଠ ସମୃଦ୍ଧିଶାଳୀ ରାଜ୍ୟ ରୂପେ ଗଢ଼ିବା ହେଉଛି ଆମର ଲକ୍ଷ୍ୟ । ସେଥିପାଇଁ କୃଷି, ଶିଳ୍ପ, ଜଳସେଚନ, ବିଦ୍ୟୁତ୍ ଉତ୍ପାଦନ ଆଦି କ୍ଷେତ୍ରରେ ଏକ ବ୍ୟାପକ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ସମାଜର ସବୁ ଶ୍ରେଣୀର ଲୋକଙ୍କ ସାହାଯ୍ୟ ବିନା ଏହା ସମ୍ଭବ ନୁହେଁ । ବିଶେଷ ଭାବରେ ଓଡ଼ିଶାର ଅଗ୍ରଗତିରେ ଶ୍ରମଶକ୍ତିର ସକ୍ରିୟ ସହଯୋଗ ଏକାନ୍ତ ଆବଶ୍ୟକ । ରାଜ୍ୟ ସରକାର ଶ୍ରମିକମାନଙ୍କର ବିଭିନ୍ନ ସୁଖ ସୁବିଧା ଏବଂ ନ୍ୟାଯୋଚିତ ଦାବୀ ହାସଲ କରିବାରେ ବହୁ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେଇଛନ୍ତି । ସର୍ବନିମ୍ନ ମଜୁରୀ ହାରକୁ ବଢ଼ାଇ ଦିଆଯାଇଛି । ରାଜ୍ୟରେ ଦରିଦ୍ର ଲୋକଙ୍କ ଉତ୍ଥାନ ପାଇଁ ପ୍ରାୟ ୫ ଲକ୍ଷ ପରିବାରଙ୍କୁ ସ୍ଥାୟୀ ଭାବରେ ଉତ୍ଥାନ କରାଯିବାର ବ୍ୟବସ୍ଥା କରାଯାଉଛି । ଏହି ୫ ଲକ୍ଷ ପରିବାର ହେଉଛନ୍ତି ଭୂମିହୀନ ଚାଷୀ-ମୂଲିଆ ଶ୍ରେଣୀର ଲୋକ । ଶ୍ରମିକମାନଙ୍କ ମଙ୍ଗଳ ପାଇଁ ଶ୍ରମିକ ବୀମା ଯୋଜନା, ଭବିଷ୍ୟନିଧି ଯୋଜନା, ମାତୃମଙ୍ଗଳ ଯୋଜନା ଆଦି କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

"ସରକାର ଚାହାଁନ୍ତି ରାଜ୍ୟରେ ଏପରି ଏକ କାମଧନ୍ଦାର ବାତାବରଣ ସୃଷ୍ଟି ହେଉ, ଯେଉଁଥିରେ ବହୁ ଶ୍ରମିକ ଓଡ଼ିଶା ବାହାରକୁ ଯାଇ ଦାଦନ ଶ୍ରମିକ ଭାବରେ ବିଭିନ୍ନ ଅଭାବ ଅସୁବିଧାରେ ନ ପଡ଼ନ୍ତୁ । ସରକାର ଏ ସଂପର୍କରେ ମଧ୍ୟ ଆବଶ୍ୟକ କାର୍ଯ୍ୟପନ୍ଥା ଗ୍ରହଣ କରିଛନ୍ତି ।

"ଶ୍ରମିକମାନଙ୍କର ନ୍ୟାଯୋଚିତ ଦାବୀ କିପରି ଶୀଘ୍ର ସମାଧାନ ହେବ, ପରିଚାଳନା କ୍ଷେତ୍ରରେ ସେମାନେ ଅଧିକରୁ ଅଧିକ ଅଂଶୀଦାର ହେବେ, ବିଭିନ୍ନ ଶ୍ରମିକ ଆଇନର ଲାଭ ସେମାନେ ଯେପରି ଭୋଗ କରିପାରିବେ, ତାହା ହିଁ ସରକାରଙ୍କର ଆନ୍ତରିକ ଇଚ୍ଛା ।

"ମୁଁ ଏହି ପବିତ୍ର ମଇ ଦିବସ ଉପଲକ୍ଷେ ସେମାନଙ୍କ ପ୍ରତି ରାଜ୍ୟ ସରକାରଙ୍କର ଏକାନ୍ତ ସଦିଚ୍ଛା ଓ ମିତ୍ରତା ଘୋଷଣା କରିବା ସଙ୍ଗେ ସଙ୍ଗେ ଆଶା କରୁଛି ଯେ ଏକ ନୂତନ ଓଡ଼ିଶା ନିର୍ମାଣ ପାଇଁ ସେମାନେ ସରକାରଙ୍କ ସହ ପୂର୍ଣ୍ଣ ସହଯୋଗ କରିବେ ।"

ଜାନକୀବଲ୍ଲଭ ପଟ୍ଟନାୟକ



ମଇ ଦିବସ ଉପଲକ୍ଷେ

## ଶ୍ରମ ରାଷ୍ଟ୍ରମନ୍ତ୍ରୀ

## ମହମ୍ମଦ ମୁଜାଫର ହୁସେନ୍ ଖାନ୍‌ଙ୍କ

# ବାର୍ତ୍ତା

"ଆଜିର ଏହି ଶୁଭ 'ମଇ ଦିବସ' ଉପଲକ୍ଷେ ମୁଁ ରାଜ୍ୟର ସମସ୍ତ ଶ୍ରମିକ ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

"ଶ୍ରମଜୀବୀମାନଙ୍କ ପାଇଁ ଏହି ଦିବସଟି ଏକ ଗୁରୁତ୍ୱପୂର୍ଣ୍ଣ ଏବଂ ଅବିସ୍ମରଣୀୟ ଦିବସ । ଆଜିକି ପ୍ରାୟ ଶହେ ବର୍ଷ ପୂର୍ବେ ଶ୍ରମିକମାନେ ସେମାନଙ୍କର ନ୍ୟାଯ୍ୟ ଦାବୀ ପୂରଣ ଲାଗି ସଂଗ୍ରାମ ଆରମ୍ଭ କରିଥିଲେ ।

"ଶ୍ରମିକମାନେ ଯେପରି ସେମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ ପାଇପାରିବେ ଏବଂ ଯେପରି ସେମାନଙ୍କର ସର୍ବାଙ୍ଗୀନ କଲ୍ୟାଣ ଏବଂ ଉନ୍ନତି ସାଧିତ ହୋଇପାରିବ, ସେଥି ନିମିତ୍ତ ସରକାର ବିଶେଷ ତତ୍ପର । ବିଶେଷତଃ ଗ୍ରାମାଞ୍ଚଳରେ କାମ କରୁଥିବା ଅସଂଗଠିତ ଶ୍ରମିକମାନେ ଯେପରି ସେମାନଙ୍କ ନ୍ୟାଯ୍ୟ ପ୍ରାପ୍ୟ ପାଇବାରୁ ବଞ୍ଚିତ ନ ହୁଅନ୍ତି, ସେଥି ନିମିତ୍ତ ବହୁବିଧ ପଦକ୍ଷେପ ଗ୍ରହଣ କରଯାଇଅଛି । ଏତଦ୍‌ବ୍ୟତୀତ କଳକାରଖାନାରେ ଯେଉଁ ଶ୍ରମିକମାନେ କାର୍ଯ୍ୟ କରୁଛନ୍ତି ଏବଂ ସେମାନଙ୍କର ଯେପରି ସ୍ୱାର୍ଥରକ୍ଷା କରାଯାଇ ପାରିବ ଓ ସେମାନେ ଯେପରି ଆକସ୍ମିକ ଦୁର୍ଘଟଣାର ଶିକାର ନ ହୁଅନ୍ତି, ସେଥି ପ୍ରତି ବିଶେଷ ଧ୍ୟାନ ଦିଆଯାଇଅଛି । ଶ୍ରମିକମାନେ ଯେପରି ସହଜ ଓ ସୁଲଭ ଚିକିତ୍ସା ପାଇପାରିବେ, ସେଥିଲାଗି ରାଜ୍ୟ କର୍ମଚାରୀ ବୀମା ଯୋଜନା ଜରିଆରେ ବିହିତ ବ୍ୟବସ୍ଥା କରଯାଇଅଛି ।

"ସର୍ବୋପରି ରାଜ୍ୟର ଶ୍ରମିକମାନେ ଯେପରି ରାଜ୍ୟ ମଧ୍ୟରେ ନିଯୁକ୍ତି ପାଇପାରିବେ, ସେଥି ପ୍ରତି ବିଭିନ୍ନ ଯୋଜନାମାନ କାର୍ଯ୍ୟକାରୀ କରଯାଉଅଛି । ବିଶେଷ କରି ମହିଳାମାନେ ଯେପରି ବିଭିନ୍ନ କ୍ଷେତ୍ରରେ ଅଧିକ କର୍ମ ନିଯୁକ୍ତି ପାଇପାରିବେ, ସେଥି ପାଇଁ ବିଶେଷ ଧ୍ୟାନ ଦିଆଯାଉଅଛି ।

"ଆଜିର ଏହି ଶୁଭ ଦିବସରେ ମୁଁ ଆମ ଶ୍ରମିକ ଭାଇଭଉଣୀମାନଙ୍କ ପାଇଁ ମୋର ତଥା ରାଜ୍ୟ ସରକାରଙ୍କ ତରଫରୁ ସେମାନଙ୍କର ସର୍ବାଙ୍ଗୀନ ଉନ୍ନତି ଓ ମଙ୍ଗଳ କାମନା କରୁଅଛି ।"

# ମୋ ଦୃଷ୍ଟିରେ ....

ପ୍ରତିବର୍ଷ ମଇ ମାସ ପହିଲୁ ଦିବସଟି ପୃଥିବୀର ଶ୍ରମଜୀବି-ମାନଙ୍କ ପାଇଁ ଏକ ମହତ୍ୱପୂର୍ଣ୍ଣ ଦିବସ । ଏହି ଶୁଭ ଦିବସରେ 'ଉତ୍କଳ ପ୍ରସଙ୍ଗ' ଓଡ଼ିଶାର ଅସୁମାରୀ ମଜ୍‌ଦୁର ଶ୍ରମିକ ଭାଇ-ଭଉଣୀମାନଙ୍କୁ ତାର ଆନ୍ତରିକ ଅଭିନନ୍ଦନ ଜଣାଉଛି ।

ଆଜିର ଚିନ୍ତାଧାରାରେ ମାଲିକ ବା ଶ୍ରମିକ କେହି ଶିଳ୍ପ ବା କୃଷିକୁ ଆପଣାର ବୋଲି କହି ପାରିବେ ନାହିଁ । । ଶିଳ୍ପ ଓ କୃଷି ହେଉଛି ସମୁଦାୟ ଗୋଷ୍ଠୀ ବା ସମାଜର । ସେ ମାଲିକ ହୁଅନ୍ତୁ ବା ଶ୍ରମିକ ହୁଅନ୍ତି, ସମସ୍ତେ ପ୍ରଥମତଃ ଗୋଷ୍ଠୀ ବା ସମାଜର ଦାସ । ସମାଜ ବା ଗୋଷ୍ଠୀର କର୍ତ୍ତବ୍ୟ ଅନୁରୋଧରେ ଉଭୟେ ଶ୍ରମିକ ଓ ମାଲିକ କୃଷି ଓ ଶିଳ୍ପ ଉତ୍ପାଦନରେ ପରସ୍ପର ସୁଶୃଂଖଳିତ-ଭାବେ ନିଜ ନିଜର ଦାୟିତ୍ୱ ତୁଲାଇବା ଉଚିତ୍ । ନିଜ ନିଜ ଭିତରେ ଭେଦଭାବ ଦୂର କରି ସମସ୍ତ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି କରି ଦେଶ ଓ ଜାତିର ସମୂହ ସ୍ୱାର୍ଥକୁ ସାଧନ କରିବା ବାଞ୍ଛନୀୟ ।

ଶ୍ରମହିଁ କର୍ମ । ଗୀତାର ତୃତୀୟ ଅଧ୍ୟାୟ କର୍ମଯୋଗରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି–

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ ।
ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର ।।

ଏଠାରେ 'ଯଜ୍ଞାର୍ଥ କର୍ମ' କଣ ତାହା ବିଚାର କରିବାର କଥା । ଦେବତାଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ଆହୁତି ପ୍ରଦାନ ପୂର୍ବକ ଯେଉଁ ହୋମକ୍ରିୟା କରାଯାଏ, ତାହାକୁ ସାଧାରଣତଃ 'ଯଜ୍ଞ' ବୋଲି କୁହାଯାଇଥାଏ । କିନ୍ତୁ ପ୍ରକୃତ ପକ୍ଷରେ ପ୍ରତ୍ୟେକ ବର୍ଣ୍ଣ ବା ଜାତିର ସ୍ୱଧର୍ମୋଚିତ ସମସ୍ତ କର୍ମକୁ ଯଦି ଭୋଗର ନିମିତ୍ତ କରା ନ ଯାଇ ତ୍ୟାଗର ନିମିତ୍ତ କରାଯାଏ, ତେବେ ସେହି କର୍ମକୁ ଯଜ୍ଞ ବୋଲି କୁହାଯାଇ ପାରେ । କେବଳ ଏହି ପ୍ରକାର କର୍ମ କରିବା ଦ୍ୱାରା ମଣିଷର କର୍ମ ବନ୍ଧନ ହୁଏ ନାହିଁ । ଜୀବନ ଯଜ୍ଞରେ ମଣିଷ ତାର ସମସ୍ତ କାମନା ବାସନା, ସ୍ୱାର୍ଥ ଓ ଭୋଗକୁ ଆହୁତି ରୂପେ ଅର୍ପଣ କରିବାକୁ ଭଗବାନ ନିର୍ଦ୍ଦେଶ ଦେଇଛନ୍ତି ଓ ଅହଙ୍କାର ଶୂନ୍ୟ ହୋଇ ଜୀବନର ସମସ୍ତ କର୍ମକୁ ଯଜ୍ଞ ରୂପେ ସଂପାଦନ କରିବାକୁ କହିଛନ୍ତି ।

ଗୀତାର ଅମର ବାଣୀକୁ ଉଦ୍ଧାର କରି ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କହିଛନ୍ତି, "ଏକ ଶାନ୍ତିମୟ କର୍ମମୟ ଜୀବନ ଯାପନ କରିବା ପାଇଁ ଗୀତା ମାନବ ସମାଜକୁ ଆହ୍ୱାନ କରେ । ଏପରି ଏକ ଅନାସକ୍ତ କର୍ମମୟ ଜୀବନଯାପନ କରିବାକୁ ହେବ । ଫଳ ଲାଭର ଆଶା ନ ରଖି କର୍ମ କରାଯାଇ ପାରିବ । ସେ ସଂପର୍କରେ ଗୀତାର ଅମୂଲ୍ୟ ଉପଦେଶ ମାନବ ଜାତିକୁ ପ୍ରେରଣା ଦେଇ ଆସିଛି ।"

ଆଜିର ଏହି ପବିତ୍ର ଦିବସରେ ଗୀତାର ସେହି ମହାନ୍ ବାଣୀକୁ ସ୍ମରଣ କରାଇ ଉତ୍କଳ ପ୍ରସଙ୍ଗ ପ୍ରଚଣ୍ଡ ରୌଦ୍ର ଦଗ୍ଧ ଓଡ଼ିଶାର ପୁରପଲ୍ଲୀର ଅଗଣିତ ପାଠକ ପାଠିକାଙ୍କ ମନରେ ଶୀତଳ ଭାବଧାରା ଛୁଟାଇ ଦେବା ନିମନ୍ତେ ଏହି ମଇ ସଂଖ୍ୟାଟିକୁ ଉତ୍ସର୍ଗ କରୁଛି ।

# ଓଡ଼ିଶାର ପ୍ରଗତି ଓ ସମୃଦ୍ଧି

ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ
ରାଜ୍ୟପାଳ

ଭାରତର ପୂର୍ବତନ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦାରୁଣ ବିୟୋଗ ରାଜ୍ୟ ପାଇଁ ଅପୂରଣୀୟ କ୍ଷତି ଘଟାଇଛି ; ପ୍ରାୟ ଦୀର୍ଘ ପନ୍ଦର ବର୍ଷ ଧରି ଶ୍ରୀମତୀ ଗାନ୍ଧୀ ଭାରତକୁ ବିଶ୍ୱ ଦରବାରରେ ନ୍ୟାଯ୍ୟ ଆସନ ଦେବା ସଙ୍ଗେ ସଙ୍ଗେ ଭାରତର ମାନ ମର୍ଯ୍ୟାଦାକୁ ବୃଦ୍ଧି କରିବାପାଇଁ ଐକାନ୍ତିକ ଉଦ୍ୟମ କରି ଆସିଥିଲେ । ଓଡ଼ିଶା ପ୍ରତି ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପ୍ରଗାଢ ସ୍ନେହ ସହାନୁଭୂତିକୁ ରାଜ୍ୟବାସୀ ସବୁଦିନ ପାଇଁ ସ୍ମରଣ କରୁଥିବେ । ଓଡ଼ିଶାର ପ୍ରଗତି ଓ ସମୃଦ୍ଧି ପାଇଁ ସେ ଯେପରି ଚିନ୍ତାକରୁଥିଲେ ଏବଂ ଓଡ଼ିଶାବାସୀଙ୍କୁ ଉତ୍ସାହିତ କରି ଆସୁଥିଲେ, ତାହା ଆମ ରାଜ୍ୟବାସୀଙ୍କ ମାନସପଟରେ ଚିର ଜାଗ୍ରତ ହୋଇ ରହିବ ।

ଓଡ଼ିଶାର ଜନସାଧାରଣଙ୍କର ଆଶା ଆକାଂକ୍ଷାକୁ ପୂରଣ କରିବାପାଇଁ ରାଜ୍ୟ ସରକାର ପ୍ରଗାଢ଼ ଉଦ୍ୟମ କରିଆସୁଛନ୍ତି । ବିଗତ ପାଞ୍ଚ ବର୍ଷ ମଧ୍ୟରେ ଏକ ଦୃଢ଼ ଓ ସ୍ଥାୟୀ ସରକାର ଅଧୀନରେ ରାଜ୍ୟର ସବୁ କ୍ଷେତ୍ରରେ ଦ୍ରୁତ ବିକାଶ ସାଧିତ ହୋଇ-ପାରିଛି । ରାଜ୍ୟର ସର୍ବାଙ୍ଗୀନ ବିକାଶ ଲାଗି ସରକାରଙ୍କର ପ୍ରଗତିଶୀଳ ନୀତି ଓ କାର୍ଯ୍ୟକ୍ରମ ଯେପରି ଭାବେ କାର୍ଯ୍ୟକାରୀ କରାଯାଉଥିଲା, ତାହା ପ୍ରତି ଜନସାଧାରଣଙ୍କ ଆସ୍ଥା କିପରି ଥିଲା ଏହି ନିର୍ବାଚନରେ ତାହା ପ୍ରତିଫଳିତ ହୋଇଛି । ବିଗତ ବର୍ଷଗୁଡ଼ିକ ମଧ୍ୟରେ ରାଜ୍ୟରେ ଯେଉଁ ଯେଉଁ କ୍ଷେତ୍ରରେ ପ୍ରଗତି ହାସଲ ହୋଇଛି ତାହାକୁ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ଜନସାଧାରଣ ଉପକୃତ ହେଲଭଳି ବିଭିନ୍ନ ପ୍ରଗତିଶୀଳ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାପାଇଁ ଗଠନମୂଳକ ପଦକ୍ଷେପ ଗ୍ରହଣ କରାଯିବ ଯେପରି ତାହା ରାଜ୍ୟର ପ୍ରଗତି ଓ ସମୃଦ୍ଧିକୁ ତ୍ୱରାନ୍ୱିତ କରିବା ପାଇଁ ସହାୟକ ହେବ । ଜନସାଧାରଣଙ୍କ ଉନ୍ନତି ପାଇଁ ଯେଉଁ ନୀତି ଓ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯିବ, ସେ ଦିଗରେ ବିଶେଷ କରି ଅନ୍ୟ ରାଜନୈତିକ ଦଳ ଘନିଷ୍ଠ ସହଯୋଗ ଓ ସମର୍ଥନ କରିବେ ବୋଲି ମୋର ଆଶା ।

ବର୍ତ୍ତମାନ ଆମେ ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ପଦାର୍ପଣ କରିବାକୁ ଯାଉଛୁ । ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ଯେଉଁ ବିକାଶ ସାଧିତ ହୋଇଛି, ତାହାର ବେଗକୁ ଅବ୍ୟାହତ ରଖିବାକୁ ହେବ ଯେପରି ଅର୍ଥନୈତିକ ପ୍ରଗତି କ୍ଷେତ୍ରରେ ଓଡ଼ିଶା ପଛରେ ପଡ଼ିଯାଏ ନାହିଁ । ଏହାକୁ ଆଖି ଆଗରେ ରଖି ଯେଉଁ ଅଞ୍ଚଳରେ ବିକାଶ କାର୍ଯ୍ୟ ପଛେଇ ଯାଇଅଛି, ସେହି ଅଞ୍ଚଳର ଦ୍ରୁତ ବିକାଶ ସାଧନ କରିବା ଲାଗି ସପ୍ତମ ଯୋଜନା କାଳ ମଧ୍ୟରେ ଯୋଜନା କମିଶନଙ୍କୁ ୫,୦୮୮·୭୧ କୋଟି ଟଙ୍କା ଅନୁମୋଦନ ଲାଗି କରିବାପାଇଁ ପଠାଯାଇଛି । ୧୯୮୫-୮୬ ବାର୍ଷିକ ଯୋଜନା ପାଇଁ ୬୫୦·୬୧ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି । ଯୋଜନାର ଚୂଡ଼ାନ୍ତ ରୂପରେଖ ଠିକଣା କରାଯାଉଛି । ଜାତୀୟ ଉନ୍ନୟନ ପରିଷଦ ଆଭିମୁଖ୍ୟରେ ଯେଉଁ କାର୍ଯ୍ୟକ୍ରମ ରଖା-ଯାଇଛି, ତଦନୁଯାୟୀ ସପ୍ତମ ପଞ୍ଚବାର୍ଷିକ ଯୋଜନାର ଚିଠା ଓ ବାର୍ଷିକ ଯୋଜନା ଚିଠାରେ ଉତ୍ପାଦନ ବୃଦ୍ଧି ବିଶେଷକରି ଖାଦ୍ୟଶସ୍ୟ ଉତ୍ପାଦନ ଓ ନିଯୁକ୍ତି ସୁବିଧା ସୃଷ୍ଟି କରିବାକୁ ଅଗ୍ରାଧିକାର ଦିଆଯାଉଛି । ଯେଉଁସବୁ ସମ୍ବଳ ଆମ ପାଖରେ ରହିଛି ଓ ପୂର୍ବରୁ ସମୃଦ୍ଧିର ଯେଉଁ ଭିତ୍ତିଭୂମି ସୃଷ୍ଟି କରାଯାଇଛି, ସେ ସବୁର ସର୍ବାଧିକ ଓ ଫଳପ୍ରଦ ବିନିଯୋଗ କରି ଉତ୍ପାଦନ ବୃଦ୍ଧିର ବେଗକୁ ତ୍ୱରାନ୍ୱିତକରି ବିଭିନ୍ନ କର୍ମ ନିଯୁକ୍ତି ପରିକଳ୍ପନା ମାଧ୍ୟମରେ ଲୋକମାନଙ୍କୁ ଅଧିକ କର୍ମ ନିଯୁକ୍ତି ଦେବାପାଇଁ ଏବଂ ସାଧାରଣ ବଣ୍ଟନ ବ୍ୟବସ୍ଥା ଦୃଢ଼ କରି ବିକାଶର ବେଗକୁ ତ୍ୱରାନ୍ୱିତ କରି ସମତା ରକ୍ଷା କରିବା ସଙ୍ଗେ ସଙ୍ଗେ ସମାଜରେ ଥିବା ଦୁର୍ବଳ ଶ୍ରେଣୀର ଲୋକ, ବିଶେଷକରି ହରିଜନ ଓ ଆଦିବାସୀ ଶ୍ରେଣୀର ଲୋକ, ବୃଦ୍ଧ ଓ ଅକର୍ମଣ୍ୟ ଲୋକଙ୍କ ଜୀବନଧାରଣ ମାନକୁ ଉନ୍ନତ କରିବାପାଇଁ ଲକ୍ଷ୍ୟ ରଖାଯାଉଛି । ବିଭିନ୍ନ କ୍ଷେତ୍ରରେ ବିକାଶ ସାଧନ କରିବାପାଇଁ ନୂତନ କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମରେ ଦାରିଦ୍ର୍ୟ ବିମୋଚନ କାର୍ଯ୍ୟକ୍ରମ ଉପରେ ବିଶେଷ ପ୍ରାଧାନ୍ୟ ଆରୋପ କରାଯାଇଛି ଏବଂ ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ସେଥିପାଇଁ ଅଧିକ ବ୍ୟୟ ବରାଦ କରାଯିବ ।

ଆଗାମୀ ଯୋଜନା କାଳ ମଧ୍ୟରେ କୃଷି ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରାଯିବ । ଧାନ ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ତୈଳବୀଜ, ଡାଲିଜାତୀୟ ଶସ୍ୟ, ଗହମ, ଜପା ଏବଂ ଆଳୁ ଉତ୍ପାଦନ ପ୍ରତି ମଧ୍ୟ ପ୍ରାଧାନ୍ୟ ଦିଆଯିବ । ୧୯୮୦—୮୫ ମଧ୍ୟରେ ରାଜ୍ୟରେ ଯେଉଁ ସବୁଜ ବିପ୍ଳବ ଆରମ୍ଭ

କରାଯାଇଛି, ତାହା ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ସଂପୂର୍ଣ୍ଣ ହେବ । ବିଗତ ପାଞ୍ଚ ବର୍ଷ ମଧ୍ୟରେ ରାଜ୍ୟରେ ଖାଦ୍ୟ ଶସ୍ୟ ଉତ୍ପାଦନ ବିଶେଷଭାବେ ବୃଦ୍ଧି ପାଇଛି ଏବଂ ୧୯୯୦ ମସିହା ସୁଦ୍ଧା ଅନ୍ତତଃ ୧୦ ଲକ୍ଷ ଟନ ବଳକା ଖାଦ୍ୟ ଶସ୍ୟ ଉତ୍ପାଦନ ପାଇଁ ଆମର ଉଦ୍ୟମ ଅବ୍ୟାହତ ରହିବ । ଏହାଦ୍ୱାରା ସବୁଦିନ ପାଇଁ ଖାଦ୍ୟଶସ୍ୟ ନିଅଣ୍ଟକୁ ଦୂର କରାଯାଇପାରିବ । ରାଜ୍ୟରେ ପ୍ରଥମଥର କୃଷି ଉତ୍ପାଦନ ବୃଦ୍ଧି ସହିତ କୃଷିଭିତ୍ତିକ ଶିଳ୍ପର ସମନ୍ୱୟ ସ୍ଥାପନପାଇଁ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ରାଜ୍ୟରେ ଆଖୁ ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ବଡ଼ଗଡ଼ା ଓ ନୟାଗଡ଼ଠାରେ ଦୁଇଟି ନୂଆ ଚିନିକଳ ସ୍ଥାପିତ ହୋଇଛି ଏବଂ ରାଜ୍ୟରେ ଅଧିକନ୍ତୁ ଅଧିକ ଅଞ୍ଚଳରେ ଯେପରି କପାଚାଷ କରାଯିବ, ସେଥିପ୍ରତି ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ନୂଆ ସୂତାକଳମାନ ସ୍ଥାପନ କରାଯାଇଛି । ୧୯୮୩-୮୪ ଶେଷ ବେଳକୁ ରାଜ୍ୟର ଶତକଡ଼ା ୬୫ ଭାଗ କୃଷକ ପରିବାର ସମବାୟ ପରିସରଭୁକ୍ତ ହୋଇଥିଲେ । ଆଗାମୀ ଯୋଜନା-କାଳ ମଧ୍ୟରେ ରାଜ୍ୟର ସମସ୍ତ କୃଷକ ପରିବାରକୁ ସମବାୟ ପରିସରଭୁକ୍ତ କରାଯିବ ବୋଲି ଆଶା କରାଯାଏ । କୃଷକ-ମାନଙ୍କୁ ପ୍ରାକୃତିକ ବିପର୍ଯ୍ୟୟଜନିତ କ୍ଷୟକ୍ଷତିରୁ ରକ୍ଷା କରିବା ପାଇଁ ରାଜ୍ୟର ମୋଟ ୩୧୪ଟି ବ୍ଲକ୍‌ରେ ଶସ୍ୟ ବୀମା ଯୋଜନା କାର୍ଯ୍ୟକାରୀ କରାଯିବ ବୋଲି ଆଶା କରାଯାଏ । ଆଉ ମଧ୍ୟ ସପ୍ତମ ଯୋଜନା ଶେଷ ସୁଦ୍ଧା ହେକ୍ଟର ପିଛା ସାର ବ୍ୟବହାରର ପରିମାଣ ୨୦ କିଲୋଗ୍ରାମ୍‌କୁ ବୃଦ୍ଧି କରାଯିବ ବୋଲି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ବିଗତ ପାଞ୍ଚ ବର୍ଷ ମଧ୍ୟରେ ରାଜ୍ୟରେ ଜଳସେଚନର ପରିସର ଯଥେଷ୍ଟ ବୃଦ୍ଧି ପାଇଛି । ରାଜ୍ୟର ପ୍ରତ୍ୟେକ ବ୍ଲକ୍‌ରେ ୫୦୦ରୁ ୧,୦୦୦ ଏକର ଅଧିକ ଜମିକୁ ଜଳସେଚିତ କରିବା-ପାଇଁ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ଜଳସେଚନ ପ୍ରତି ସର୍ବାଧିକ ଗୁରୁତ୍ୱ ଦିଆଯିବ ଏବଂ ଆଉ ଅଧିକ ୮ ଲକ୍ଷ ହେକ୍ଟର ଜମିକୁ ଜଳସେଚନର ସୁବିଧା ଯୋଗାଇ ଦିଆଯିବା ପାଇଁ ଯଥାଯଥ ଉଦ୍ୟମ କରାଯିବ । ରେଙ୍ଗାଲି, ଅପର କୋଲାବ, ଅପର ଇନ୍ଦ୍ରାବତୀ ଓ ସୁବର୍ଣ୍ଣରେଖାଭଳି କାର୍ଯ୍ୟକାରୀ ହେଉଥିବା ଯୋଜନାଗୁଡ଼ିକୁ ସଂପୂର୍ଣ୍ଣ କରାଯିବ ଏବଂ ନୂଆ ପରିକଳ୍ପନା-ଗୁଡ଼ିକୁ ହାତକୁ ନିଆଯିବ । ଉଠା ଜଳସେଚନ, ଜଳ ମଣ୍ଡ ନିର୍ମାଣ, ପୁରୁଣା କ୍ଷୁଦ୍ର ଜଳସେଚନ ଯୋଜନାଗୁଡ଼ିକର ମରାମତି ଓ ଉନ୍ନତି ବିଧାନ କରାଯିବା ସଙ୍ଗେ ସଙ୍ଗେ ଡ୍ରିପ୍ ଇରିଗେସନ ଯୋଜନା ଏହି ଅଳ୍ପଦିନ ହେଲା କାର୍ଯ୍ୟକାରୀ କରାଯାଇଛି । ଏହାଦ୍ୱାରା ଉପକୂଳବର୍ତ୍ତୀ ଅଞ୍ଚଳରେ ଲୁଣାପାଣି ରୋକିବା ଏବଂ ମଧୁର ଜଳକୁ ଅବରୁଦ୍ଧ କରିବା ବ୍ୟବସ୍ଥା କରାଯାଇଛି । ମହାନଦୀ ତ୍ରିକୋଣ ଭୂମି ଅଞ୍ଚଳରେ ଜଳ ନିଷ୍କାସନ ପାଇଁ ଏକ ମାଷ୍ଟର ପ୍ଲାନ୍ କାର୍ଯ୍ୟକାରୀ କରିବା ବିଷୟ ଚିନ୍ତା କରାଯାଉଛି ।

ଉଭୟ ଶିଳ୍ପ ଓ କୃଷିର ବିକାଶ ପାଇଁ ବିଦ୍ୟୁତ୍ ଶକ୍ତି ହେଉଛି ମୂଳିକାଠି । ରାଜ୍ୟରେ ସଂପ୍ରତି ବିଦ୍ୟୁତ୍ ପ୍ରକଳ୍ପ ଗୁଡ଼ିକର ପ୍ରତିଷ୍ଠିତ କ୍ଷମତା ୧,୧୩୪ ମେଗାଓ୍ୱାଟ୍ ଥିବାବେଳେ ୬୧୪ ମେଗାଓ୍ୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ହେଉଛି । ବର୍ତ୍ତମାନ ନିର୍ମାଣାଧୀନ ରେଙ୍ଗାଲି, ଅପର କୋଲାବ, ଅପର ଇନ୍ଦ୍ରାବତୀ ଓ ହୀରାକୁଦ ଯୋଜନାର ସପ୍ତମ ୟୁନିଟ୍ ଇତ୍ୟାଦି ୪ ଗୋଟି ଜଳ ବିଦ୍ୟୁତ୍ ପ୍ରକଳ୍ପ ସଂପୂର୍ଣ୍ଣ କରାଯିବା ପରେ ବିଦ୍ୟୁତ୍ ଶକ୍ତିର ପ୍ରତିଷ୍ଠିତ କ୍ଷମତା ୯୬୨.୫ ମେଗାଓ୍ୱାଟ୍‌କୁ ବୃଦ୍ଧି ପାଇବ ଏବଂ ଅଧିକ ୯୯୫ ମେଗାଓ୍ୱାଟ୍ ବିଦ୍ୟୁତ୍ ଶକ୍ତି ମିଳି ପାରିବ । ଏତଦ୍‌ବ୍ୟତୀତ କେନ୍ଦ୍ରୀୟ ଉଦ୍ୟୋଗରେ ତାଳଚେରଠାରେ ଗୋଟିଏ ସୁପର ତାପଜ ବିଦ୍ୟୁତ୍ କେନ୍ଦ୍ର ଏବଂ ବ୍ରଜରାଜନଗର ନିକଟରେ ଥିବା ଇବ୍ ଉପତ୍ୟକାରେ ରାଜ୍ୟ ଉଦ୍ୟୋଗରେ ଗୋଟିଏ ନୂତନ ତାପଜ କେନ୍ଦ୍ର ପ୍ରତିଷ୍ଠା କରାଯିବ । ଆଗାମୀ ପାଞ୍ଚବର୍ଷ ମଧ୍ୟରେ ଗ୍ରାମାଞ୍ଚଳ ବିଦ୍ୟୁତି-କରଣ କାର୍ଯ୍ୟକ୍ରମ ପ୍ରତି ଧ୍ୟାନ ଦିଆଯିବ ।

୧୯୮୦ ମସିହାରେ ଅନୁସୃତ ପ୍ରଗତିଶୀଳ ଶିଳ୍ପନୀତି ଏବଂ ଶିଳ୍ପୋଦ୍ୟୋଗୀମାନଙ୍କୁ ଦିଆଯାଇଥିବା ବ୍ୟାପକ ପ୍ରୋତ୍ସାହନ-ମୂଳକ ବ୍ୟବସ୍ଥା ଯୋଗୁଁ ବିଗତ ପାଞ୍ଚବର୍ଷ ମଧ୍ୟରେ ଶିଳ୍ପ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରାଯାଇ ପାରିଛି । କ୍ଷୁଦ୍ର ଶିଳ୍ପ, କାରିଗରୀ ଭିତ୍ତିକ ଶିଳ୍ପ ଓ ହସ୍ତଶିଳ୍ପ କ୍ଷେତ୍ରରେ ଯେଉଁ ସଫଳତା ହାସଲ କରଯାଇ ପାରିଛି, ତାହା ବିଶେଷ ପ୍ରଣିଧାନ୍ୟ ଯୋଗ୍ୟ । ଆଗାମୀ ଯୋଜନା କାଳରେ ଶିଳ୍ପ କ୍ଷେତ୍ରରେ ଅଧିକ ଅର୍ଥ ବିନିଯୋଗ କରାଯିବ ଏବଂ ବହୁ ସଂଖ୍ୟକ କ୍ଷୁଦ୍ର ଶିଳ୍ପ ସ୍ଥାପନ କରାଯିବ । ରାଜ୍ୟର ବିଭିନ୍ନ ଜିଲ୍ଲାରେ କଂପ୍ୟୁଟର ଓ ଇଲେକ୍‌ଟ୍ରୋନିକ୍ କାରଖାନା ଏବଂ ଭୁବନେଶ୍ୱରଠାରେ ଗୋଟିଏ ଆଞ୍ଚଳିକ ସୁପର କଂପ୍ୟୁଟର କେନ୍ଦ୍ର ପ୍ରତିଷ୍ଠା କରି ଅତ୍ୟାଧୁନିକ ଶିଳ୍ପ କାରଖାନା ପ୍ରତିଷ୍ଠା କ୍ଷେତ୍ରରେ ଓଡ଼ିଶା ଅଗ୍ରଣୀ ଭୂମିକା ନେବ । ନିର୍ମାଣାଧୀନ ଶିଳ୍ପ ସଂସ୍ଥାଗୁଡ଼ିକ ଅତିଶୀଘ୍ର ସଂପୂର୍ଣ୍ଣ କରାଯିବ ଏବଂ ଗ୍ରାମ୍ୟଶିଳ୍ପ, ହସ୍ତତନ୍ତ ଓ କାରିଗରୀଭିତ୍ତିକ ଶିଳ୍ପ ପ୍ରତି ପ୍ରାଧାନ୍ୟ ଦିଆଯିବ । ଓଡ଼ିଶାର ଶିଳ୍ପ କ୍ଷେତ୍ରରେ ଆଗାମୀ ପାଞ୍ଚବର୍ଷ ଦ୍ୱିତୀୟ ଉଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିବ ।

ଗ୍ରାମ୍ୟ ବିକାଶ କ୍ଷେତ୍ରରେ ପଶୁପାଳନ ଓ ମତ୍ସ୍ୟଚାଷ ମଧ୍ୟ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଅଂଶ । ପଶୁପାଳନ କାର୍ଯ୍ୟକ୍ରମରେ ତିନିଗୋଟି ବିଷୟ ପ୍ରତି ସବିଶେଷ ଧ୍ୟାନ ଦିଆଯାଉଛି । ସେଗୁଡ଼ିକ ହେଲା–ପଶୁମାନଙ୍କର ସ୍ୱାସ୍ଥ୍ୟର ଯତ୍ନନେବା କାର୍ଯ୍ୟକୁ ଅଧିକ ସଂପ୍ରସାରଣ ଓ ପଶୁପାଳନ ବ୍ୟବସ୍ଥାର ବିକାଶ ସାଧନ କରି ଦୁଗ୍ଧ ଓ ଅଣ୍ଡା ଉତ୍ପାଦନ ବୃଦ୍ଧି ଏବଂ ଗ୍ରାମାଞ୍ଚଳର ଦରିଦ୍ର ପରିବାରଙ୍କୁ ଉପକୃତ କରିବା ସଙ୍ଗେ ସଙ୍ଗେ ସେମାଙ୍କର ଆୟବୃଦ୍ଧି ଘଟାଇବା । 'ଆନନ୍ଦ' ଢାଞ୍ଚାରେ ଗ୍ରାମ୍ୟ ସ୍ତରରେ ଦୁଗ୍ଧ ଉତ୍ପାଦନ ସମବାୟ ସମିତି ଓ ରାଜ୍ୟ ସ୍ତରରେ ଓଡ଼ିଶା ସମବାୟ ଦୁଗ୍ଧ ଉତ୍ପାଦନ ମହାସଂଘକୁ ନେଇ ଗଠିତ ତିନି ସୋପାନ ବିଶିଷ୍ଟ ଦୁଗ୍ଧ ସମବାୟ ସଂସ୍ଥା ଉଲ୍ଲେଖନୀୟ ଅଗ୍ରଗତି ହାସଲ କରିଛି । ଆଗାମୀ ପାଞ୍ଚବର୍ଷ ମଧ୍ୟରେ ପର୍ଯ୍ୟାପ୍ତ ଦୁଗ୍ଧ ଉତ୍ପାଦନ କାର୍ଯ୍ୟକ୍ରମକୁ ସବୁ ଜିଲ୍ଲାରେ କାର୍ଯ୍ୟକାରୀ କରିବାପାଇଁ ବିସ୍ତୃତ କାର୍ଯ୍ୟକ୍ରମମାନ ହାତକୁ ନିଆଯିବ । କୁକୁଡ଼ା ପାଳନ ଓ ମତ୍ସ୍ୟଚାଷର ବିକାଶ ପାଇଁ ମଧ୍ୟ ଯଥାଯଥ ଧ୍ୟାନ ଦିଆଯିବ ।

ରାଜ୍ୟର ଅର୍ଥନୀତି ଓ ପରିବେଶ ସୁରକ୍ଷା ଦିଗରେ ଜଙ୍ଗଲର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଜଙ୍ଗଲକୁ ଧ୍ୱଂସ ମୁଖରୁ

ଷା କରିବା ଓ ସେଗୁଡ଼ିକର ସୁରକ୍ଷା ସଙ୍ଗେ ସଙ୍ଗେ ନୂତନ ଜଙ୍ଗଲ ସୃଷ୍ଟି କରିବା କାର୍ଯ୍ୟ ଅବ୍ୟାହତ ରଖିବା ଲାଗି ସିଡ଼େନ୍ ସରକାରଙ୍କ ସହାୟତାରେ ନଅ ଗୋଟି ଜିଲ୍ଲାରେ ୧୯୮୩-୮୪ ଠାରୁ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଆଗାମୀ ବର୍ଷଗୁଡ଼ିକରେ ନୂତନ ବୃକ୍ଷରୋପଣ ଓ ସାମାଜିକ ଜଙ୍ଗଲ ସୃଷ୍ଟି ପାଇଁ ବ୍ୟାପକ କାର୍ଯ୍ୟକ୍ରମ ଆରମ୍ଭ କରାଯିବ । ଆମର ଜଙ୍ଗଲ ବନ୍ୟପ୍ରାଣୀରେ ଭରପୁର । ବନ୍ୟପ୍ରାଣୀଗୁଡ଼ିକର ସୁରକ୍ଷା ତଥା ସଂରକ୍ଷଣ ନିମନ୍ତେ ଓଡ଼ିଶାରେ ବନ୍ୟ-ପ୍ରାଣୀ (ୱାଇଲ୍ଡ୍ ଲାଇଫ୍ ଡିଭିଜନ) ବ୍ୟତୀତ ଅନେକ-ଗୁଡ଼ିଏ ଅଭୟାରଣ୍ୟ ପ୍ରତିଷ୍ଠା କରାଯାଇଛି । ଚନ୍ଦକାଠାରେ ଥିବା ହସ୍ତୀ ଅଭୟାରଣ୍ୟ ଓ ନନ୍ଦନକାନନ ନିକଟରେ ସିଂହ ସଫାରୀ ଦେଶରେ ଅନୁପମ । ରାଜ୍ୟର ବନ୍ୟପ୍ରାଣୀ ସଂପଦ ଓ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ଦର୍ଶନୀୟ ସ୍ଥଳୀ ବହୁ-ସଂଖ୍ୟାରେ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରୁଛି । ରାଜ୍ୟରେ ପର୍ଯ୍ୟଟକ-ମାନଙ୍କର ଆଗମନ ବୃଦ୍ଧି ପାଉଥିବା ଦୃଷ୍ଟିରୁ ପାନ୍ଥଶାଳା, ହୋଟେଲ, ରାସ୍ତାଘାଟ ଓ ବିମାନ ତଥା ରେଳ ଚଳାଚଳ ବ୍ୟବସ୍ଥାର ଉନ୍ନତି କରାଯାଇଛି । ଆଗାମୀ ବର୍ଷଗୁଡ଼ିକରେ ରାଜ୍ୟରେ ଥିବା ବିଭିନ୍ନ ପର୍ଯ୍ୟଟନ ବିଭବର ବିକାଶ ସାଧନ କରାଯିବ । ଅଳ୍ପଦିନ ପୂର୍ବରୁ ରାଜ୍ୟରେ ଏକ ବିସ୍ତୃତ କ୍ରୀଡ଼ାନୀତି ପ୍ରବର୍ତ୍ତନ କରାଯାଇଛି ଏବଂ ଆଗାମୀ ବର୍ଷଗୁଡ଼ିକରେ ଏହି ନୀତିକୁ ନିଷ୍ଠାର ସହିତ ଅନୁସୃତ ହେବ ।

ବିଗତ ବର୍ଷଗୁଡ଼ିକରେ ସାଧାରଣ ଶିକ୍ଷାର ସବୁ ସ୍ତରରେ ବିଶେଷ କରି ଶିକ୍ଷାନୁଷ୍ଠାନଗୁଡ଼ିକର ବୃଦ୍ଧି ଓ ଛାତ୍ରଛାତ୍ରୀମାନଙ୍କର ନାମଲେଖା ସନ୍ତୋଷଜନକ ଥିଲା । ପ୍ରାଥମିକ ଓ ମାଧ୍ୟମିକ ସ୍କୁଲ ଶିକ୍ଷକମାନଙ୍କୁ ଯଥେଷ୍ଟ ମାତ୍ରାରେ ଚାକିରୀକାଳୀନ ସୁବିଧା ସୁଯୋଗ ଯୋଗାଇ ଦିଆଯାଇଛି ଏବଂ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କୁ ସରକାରୀ କର୍ମଚାରୀଙ୍କ ଭଳି ଅବସରକାଳୀନ ସୁବିଧା ସୁଯୋଗ ଦେବପାଇଁ ସ୍ଥିର କରାଯାଇଛି । ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ଅବୈତନିକ ଶିକ୍ଷା ପ୍ରଦାନ କରାଯିବ ଏବଂ ବାଳିକାମାନଙ୍କ ନିମନ୍ତେ କଲେଜସ୍ତରରେ ଅବୈତନିକ ଶିକ୍ଷା ପ୍ରବର୍ତ୍ତନ ହେବ ଏବଂ ଏଥି ନିମନ୍ତେ ପ୍ରଚଳିତ ଶିକ୍ଷା ଢାଞ୍ଚାକୁ ପରିବର୍ତ୍ତନ କରିବା ସଙ୍ଗେ ସଙ୍ଗେ ଏହାକୁ କର୍ମୀ-ମୁଖୀ କରିବାପାଇଁ ପଦକ୍ଷେପ ନିଆଯିବ ।

ଜଳାଭାବଗ୍ରସ୍ତ ଗ୍ରାମଗୁଡ଼ିକରେ ନଳକୂପ ସାହାଯ୍ୟରେ ପାନୀୟଜଳ ଯୋଗାଇ ଦେଇ ଗତ ପାଞ୍ଚ ବର୍ଷ ମଧ୍ୟରେ ରାଜ୍ୟରେ ଉଲ୍ଲେଖନୀୟ ସଫଳତା ହାସଲ ହୋଇଛି । ଷଷ୍ଠ ଯୋଜନା କାଳରେ ଏ କ୍ଷେତ୍ରରେ ଆରମ୍ଭ କରାଯାଇଥିବା ବ୍ୟାପକ କାର୍ଯ୍ୟ-କ୍ରମ ଦ୍ୱାରା ବର୍ତ୍ତମାନ ଜଳାଭାବଗ୍ରସ୍ତ ଗ୍ରାମ ରୂପେ ଚିହ୍ନଟ ହୋଇଥିବା ସବୁ ଗ୍ରାମକୁ ସ୍ୱଚ୍ଛ ଓ ନିରାପଦ ପାନୀୟଜଳ ଯୋଗାଇ ଦେବାପାଇଁ ନିଶ୍ଚିତ ବ୍ୟବସ୍ଥା କରାଯାଇଛି । ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ରାଜ୍ୟରେ ସବୁ ଗ୍ରାମରେ ପାନୀୟ ଜଳର ଅଭାବ ଦୂର କରାଯିବ ଓ ସହରାଞ୍ଚଳରେ ପାଇପ୍ ଜଳ ଯୋଗାଣ ବ୍ୟବସ୍ଥା ପ୍ରଚଳନ କରାଯିବ ଓ ଏହାର ଉନ୍ନତି ସାଧନ କରାଯିବ ।

ରାଜ୍ୟ ସରକାରଙ୍କ ସ୍ୱାସ୍ଥ୍ୟ ନୀତିର ମୌଳିକ ଲକ୍ଷ୍ୟ ହେଉଛି ସାର୍ବଜନୀନ ପ୍ରାଥମିକ ସ୍ୱାସ୍ଥ୍ୟ ସୁରକ୍ଷା ଓ ଡାକ୍ତରୀ ସେବା ଯୋଗାଣ । ଯେଉଁମାନେ ମାଳପଡ଼ଳ ଓ ଦୂରଦୂରାନ୍ତ ଅଞ୍ଚଳରେ ରହି ଏହି ସେବାରୁ ବଞ୍ଚିତ, ସେମାନଙ୍କ ସ୍ୱାସ୍ଥ୍ୟ ପ୍ରତି ସ୍ୱତନ୍ତ୍ର ଦୃଷ୍ଟିଦେବା ଓ ସେମାନଙ୍କ ପ୍ରାଥମିକ ସ୍ୱାସ୍ଥ୍ୟ ସୁରକ୍ଷା ବ୍ୟବସ୍ଥା ସଙ୍ଗେ ପ୍ରତିଷେଧକମୂଳକ, ଉପଶମ ଓ ଆରୋଗ୍ୟମୂଳକ ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ଏହି କାର୍ଯ୍ୟକ୍ରମ ପରିସରଭୁକ୍ତ । ଦୁଇହଜାର ଖ୍ରୀଷ୍ଟାବ୍ଦ ସୁଦ୍ଧା ସମସ୍ତଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବା ନିମନ୍ତେ ଯେଉଁ ଜାତୀୟ ସ୍ୱାସ୍ଥ୍ୟନୀତି ପ୍ରବର୍ତ୍ତନ କରାଯାଇଛି, ତାହାକୁ ଆଖି ଆଗରେ ରଖି ଆଗାମୀ ବର୍ଷଗୁଡ଼ିକରେ ସ୍ୱାସ୍ଥ୍ୟସେବା ବ୍ୟବସ୍ଥାକୁ ବ୍ୟାପକ ଭାବେ ସଂପ୍ରସାରଣ କରାଯିବ । ଯକ୍ଷ୍ମା ଓ କୁଷ୍ଠ ରୋଗର ମୂଳୋତ୍ପାଟନ ସକାଶେ ବିଶେଷ ଧ୍ୟାନ ଦିଆଯିବ । ଅଦ୍ୟାବଧି ୪୨ଗୋଟି କୁଷ୍ଠ ନିରାକରଣ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ରାଜ୍ୟର ଦଶଟି ଜିଲ୍ଲାରେ ଜିଲ୍ଲା କୁଷ୍ଠ ଅଫିସରମାନଙ୍କୁ ଅବସ୍ଥାପିତ କରାଯାଇଛି ଏବଂ ନିକଟ ଭବିଷ୍ୟତରେ ଅବଶିଷ୍ଟ ତିନି ଗୋଟି ଜିଲ୍ଲାରେ ଜିଲ୍ଲା କୁଷ୍ଠ କାର୍ଯ୍ୟାଳୟ ପ୍ରତିଷ୍ଠା କରାଯିବ ବୋଲି ଆଶା କରାଯାଏ । ରାଜ୍ୟରେ ରହିଥିବା କୁଷ୍ଠ ନିରାକରଣ କେନ୍ଦ୍ରଗୁଡ଼ିକୁ ଭାରତ ସରକାରଙ୍କ ଢାଞ୍ଚା ଅନୁଯାୟୀ ଉପଯୁକ୍ତ ଭାବେ ଉନ୍ନୀତ କରାଯିବ । ଶିଳ୍ପାଞ୍ଚଳ ଓ ଆଦିବାସୀ ଅଞ୍ଚଳରେ ଯକ୍ଷ୍ମା ନିୟନ୍ତ୍ରଣ ହୋଇପାରିବ ବୋଲି ଆଶା କରାଯାଏ । ଭାରତ ସରକାରଙ୍କଠାରୁ ଶତକଡ଼ା ୫୦ ଭାଗ ଆର୍ଥିକ ସାହାଯ୍ୟ ପାଇବା ପରେ ଏ ଦିଗରେ ଯେଉଁ ବ୍ୟୟ ବ୍ୟବସ୍ଥା ରହିଛି, ତାହା ଯଥେଷ୍ଟ ମାତ୍ରାରେ ବୃଦ୍ଧି ପାଇବ ।

ଷଷ୍ଠ ଯୋଜନା କାଳରେ ରାଜ୍ୟର ବିଭିନ୍ନ ସ୍ଥାନକୁ ଗମନାଗମନର ସୁବିଧା ସୁଯୋଗ ଯୋଗାଇଦେବା ଲାଗି ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ କରାଯାଇଥିଲା । କୋରାପୁଟ, ରାୟଗଡ଼ା, ସମ୍ବଲପୁର-ତାଳଚେର ରେଳପଥ ନିର୍ମାଣ କାର୍ଯ୍ୟ ଭାରତ ସରକାରଙ୍କ ମଞ୍ଜୁରୀପ୍ରାପ୍ତ ହୋଇଛି ଏବଂ ଯୋଜନା କମିଶନ ଯକ୍ଷପୁରା-ବାଂଶପାଣି ରେଳପଥର ଦ୍ୱିତୀୟ ପର୍ଯ୍ୟାୟ ନିର୍ମାଣ ଲାଗି ସ୍ୱୀକୃତି ପ୍ରଦାନ କରିଛନ୍ତି । ଭାରତ ସରକାର ସମ୍ବଲପୁରଠାରେ ଏକ ରେଳବାଇ ଡିଭିଜନ ପ୍ରତିଷ୍ଠା କରିବାଲାଗି ସ୍ଥିର କରିଛନ୍ତି । ଖୋର୍ଦ୍ଧାରୋଡ-ବଲାଙ୍ଗୀର ରେଳପଥ ନିର୍ମାଣ ସର୍ଭେକାର୍ଯ୍ୟ ଲାଗି ରେଲୱେ ବୋର୍ଡର ସ୍ୱୀକୃତି ମିଳିଛି । ଆଗାମୀ ପାଞ୍ଚବର୍ଷ ମଧ୍ୟରେ ସରକାର ରାଜ୍ୟରେ ରେଳ ଚଳାଚଳର ବିକାଶ ସାଧନ ନିମନ୍ତେ ଉଦ୍ୟମ ଅବ୍ୟାହତ ରଖିବେ । ୧୯୮୦ ମସିହା ପରଠାରୁ ରାଜ୍ୟରେ ସଡ଼କ ପଥର ବିସ୍ତାର ଘଟିଛି ଏବଂ ଅନେକ-ଗୁଡ଼ିଏ ସେତୁ ନିର୍ମାଣ କରାଯାଇଛି । ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ରାଜ୍ୟର ସମସ୍ତ ବ୍ଲକ ସଦର ମହକୁମା ସବୁଡିଭିଜନ ପକ୍କାରାସ୍ତା ଦ୍ୱାରା ସଂଯୋଗ କରିବା ପାଇଁ ପଦକ୍ଷେପ ନିଆଯିବ । ପରିବହନ ବ୍ୟବସ୍ଥାକୁ ସୁସଙ୍ଗଠିତ କରାଯିବ ଏବଂ ଯାତ୍ରୀମାନଙ୍କର ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସୁବିଧା ପାଇଁ ଅଧିକ ବସ୍ ଚଳାଚଳ କରାଯିବ ।

ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ଦୂର କରିବା ଏବଂ ହରିଜନ ଓ ଆଦିବାସୀ ଲୋକଙ୍କ ଜୀବନଧାରଣର ମାନକୁ ଉନ୍ନତ କରିବା ପାଇଁ ଷଷ୍ଠ ଯୋଜନା କାଳରେ ବିଶେଷ ଅଗ୍ରାଧିକାର ଦିଆ-ଯାଇଥିଲା । ଆଗାମୀ ବର୍ଷଗୁଡ଼ିକରେ ଦାରିଦ୍ର୍ୟ ଦୂରୀକରଣ

କାର୍ଯ୍ୟକ୍ରମ ଏବଂ ହରିଜନ ଓ ଆଦିବାସୀଙ୍କ ପାଇଁ ପ୍ରବର୍ତ୍ତିତ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ପ୍ରତି ପୂର୍ବପରି ଅଗ୍ରାଧିକାର ଦିଆଯିବ । କୃଷି ଶ୍ରମିକମାନଙ୍କୁ ଘରଡ଼ିହ ଯୋଗାଇ ଦିଆଯିବ । ଯେଉଁ ଶ୍ରମିକମାନେ ନିଜର ଜୀବିକାର୍ଜନ ପାଇଁ ରାଜ୍ୟ ବାହାରକୁ ଯାଉଛନ୍ତି, ସେମାନଙ୍କୁ ଶୋଷଣରୁ ରକ୍ଷା କରିବା ପାଇଁ ଏକ ଶ୍ରମିକ ବାହିନୀ (ଲ୍ୟାଣ୍ଡ ଆର୍ମି) ଗଠନ କରାଯିବ ଏବଂ ଶ୍ରମିକମାନଙ୍କୁ ରାଜ୍ୟ ମଧ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନମୂଳକ ଯୋଜନାରେ ନିଯୁକ୍ତ କରାଯିବ । ସେମାନଙ୍କୁ ନ୍ୟାଯ୍ୟ ମଜୁରୀ ଦିଆଯିବ ଓ ସେମାନଙ୍କ ସ୍ୱାସ୍ଥ୍ୟର ଯତ୍ନ ନିଆଯିବ । ସପ୍ତମ ଯୋଜନାକାଳରେ କର୍ମନିଯୁକ୍ତି ସୁବିଧା ସୁଯୋଗ ଯଥେଷ୍ଟ ମାତ୍ରାରେ ବୃଦ୍ଧି କରାଯିବାପାଇଁ ପ୍ରସ୍ତାବ ରଖାଯାଇଛି ।

ବିଗତ ପାଞ୍ଚ ବର୍ଷ ମଧ୍ୟରେ ମହିଳା, ଶାରୀରିକ ଅକ୍ଷମ ଓ ସମାଜର ଅନ୍ୟାନ୍ୟ ଦୁର୍ବଳ ଶ୍ରେଣୀ ଲୋକମାନଙ୍କୁ ଉପକୃତ କରିବା ପାଇଁ ଅନେକ ଗୁଡ଼ିଏ ଜନକଲ୍ୟାଣ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ବାର୍ଦ୍ଧକ୍ୟ ଭତ୍ତା ପରିକଳ୍ପନା ଅନୁସାରେ ଭତ୍ତା ପ୍ରଦାନର ହାର ବୃଦ୍ଧି କରାଯାଇଛି । ପ୍ରାଥମିକ ବିଦ୍ୟାଳୟ ଓ ଭିଲେଜ ଗାଇଡ୍ ଚାକିରିଗୁଡ଼ିକ କେବଳ ମହିଳାମାନଙ୍କ ଦ୍ୱାରା ପୂରଣ କରାଯିବା ପାଇଁ ନୀତିଗତଭାବେ ନିଷ୍ପତ୍ତି ନିଆଯାଇଛି । ସେହିଭଳି ସବୁ ଶିକ୍ଷାନୁଷ୍ଠାନରେ ଅନ୍ତତଃପକ୍ଷେ ଶତକଡ଼ା ଦଶଭାଗ ମହିଳା କର୍ମଚାରୀଙ୍କୁ ନିଯୁକ୍ତି ଦେବା ଲାଗି ନିର୍ଦ୍ଦେଶ ଦିଆଯାଇଛି । ପ୍ରୌଢ଼ଶିକ୍ଷା ପରିଦର୍ଶକ ଚାକିରିରେ ଶତକଡ଼ା ପଚାଶ ଭାଗ ସ୍ଥାନ ସଂରକ୍ଷଣ କରାଯାଇଛି ଏବଂ ପ୍ରତ୍ୟେକ ପଲ୍ଲୀବିକାଶ କେନ୍ଦ୍ରରେ ତିରିଶିଜଣ କରି ମହିଳାଙ୍କୁ କାମଧନ୍ଦା ଯୋଗାଇ ଦେବା ଲାଗି ଗ୍ରାମାଞ୍ଚଳରେ ଶହେଟି ପଲ୍ଲୀବିକାଶ କେନ୍ଦ୍ର ଖୋଲାଯାଇଛି । ଏହି ପ୍ରଗତିମୂଳକ ନୀତିଗୁଡ଼ିକ ଆଗାମୀ ବର୍ଷମାନଙ୍କରେ ଅନୁସୃତ ହେବ । ମହିଳାମାନଙ୍କୁ ଅତ୍ମନିଯୁକ୍ତି ସୁବିଧା ଯୋଗାଇଦେବା ଲାଗି ଏକ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯିବ ।

ବିଗତ ପାଞ୍ଚବର୍ଷ ମଧ୍ୟରେ ରାଜ୍ୟରେ ମୋଟାମୋଟି ଭାବେ ଶିଳ୍ପ ସଂପର୍କ ଓ ଆଇନ୍ ଶୃଂଖଳା ପରିସ୍ଥିତି ସନ୍ତୋଷଜନକ ରହିଥିଲା । ବର୍ତ୍ତମାନର ସରକାର ଆଇନ୍ ଶୃଂଖଳା ରକ୍ଷା କରିବା ନିମନ୍ତେ ପ୍ରତିଶ୍ରୁତି ବଦ୍ଧ ଏବଂ କୌଣସି ପରିସ୍ଥିତିରେ ସେମାନେ ଆଇନ୍ ଓ ଶାନ୍ତି ଶୃଂଖଳା ବିପନ୍ନ ହେବାପାଇଁ ଦେବେ ନାହିଁ ; ବିଗତ ବର୍ଷଗୁଡ଼ିକରେ କ୍ରମାଗତ ପ୍ରାକୃତିକ ବିପର୍ଯ୍ୟୟ ସତ୍ତ୍ୱେ ଧାନ, ଚାଉଳ ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ସାମଗ୍ରୀଗୁଡ଼ିକର ଦରଦାମ ନିୟନ୍ତ୍ରିତ ଥିଲା । ପ୍ରତ୍ୟେକ ଗ୍ରାମ ପଞ୍ଚାୟତରେ ଅଧିକ ଗୋଟିଏ ଲେଖାଏଁ ଖାଉଟି ସମବାୟ ଭଣ୍ଡାର ଖୋଲି ସୁଲଭ ମୂଲ୍ୟରେ ଜନସାଧାରଣଙ୍କୁ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଇ ଦିଆଯାଇଥିଲା । ଆଗାମୀ ପାଞ୍ଚବର୍ଷ ମଧ୍ୟରେ ଖାଉଟି ସମବାୟ ସଂସ୍ଥାକୁ ଆହୁରି ସୁଦୃଢ଼ ଓ ସଂପ୍ରସାରଣ କରାଯିବ । ଏକ ଦୃଢ଼ ସାଧାରଣ ବଣ୍ଟନ ବ୍ୟବସ୍ଥା ଜରିଆରେ ଚାଉଳ, କିରାସିନି, ଲୁଗାପଟା ପ୍ରଭୃତି ଅତ୍ୟାବଶ୍ୟକ ସାମଗ୍ରୀର ଦରଦାମ ନିୟନ୍ତ୍ରଣ କରାଯିବ ଏବଂ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଓ ଦୂରଦୂରାନ୍ତ ଅଞ୍ଚଳ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯିବ । କଳାବଜାରୀ ଓ ମୁନାଫାଖୋର ବ୍ୟବସାୟୀଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ।

(୧୯୮୫ ମାର୍ଚ୍ଚ ୧୪ ତାରିଖରେ ଓଡ଼ିଶା ବିଧାନ ସଭାର ଅଧିବେଶନରେ ରାଜ୍ୟପାଳଙ୍କ ପ୍ରଦତ୍ତ ଅଭିଭାଷଣରୁ ସଂଗୃହୀତ ।)

ମୁଖ୍ୟ ସଂପାଦକ




ଇଂଜିନିୟର୍ସ ପ୍ରତିଷ୍ଠାନ (ଭାରତ) ଓଡ଼ିଶା ଶାଖାର ବାର୍ଷିକ ଉତ୍ସବରେ ରାଜ୍ୟପାଳ ।

# ୧୯୮୫-୮୬ କେନ୍ଦ୍ର ବଜେଟ୍

ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ
କେନ୍ଦ୍ର ଅର୍ଥମନ୍ତ୍ରୀ

ଆମ ଦେଶରେ ଥିବା ବିଭିନ୍ନ ଶ୍ରେଣୀରେ ଅସଂଖ୍ୟ ଜନତାଙ୍କ ମଧ୍ୟରୁ ପ୍ରତ୍ୟେକ ଲୋକର ଅ ବ ଅସୁବିଧାକୁ ବିଗ୍ୱରକୁ ନେଇ ଯୋଜନା ଗଢ଼ିବା ପାଇଁ ସ୍ୱର୍ଗତଃ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଆହ୍ୱାନ ଦେଇଥିଲେ । ଶ୍ରୀମତୀ ଗାନ୍ଧୀଙ୍କର ପବିତ୍ର ସ୍ମୃତିକୁ ସ୍ମରଣ କରି ଜନସାଧାରଣ ଦେଶ ଗଠନ କାର୍ଯ୍ୟରେ ନିଜ ନିଜକୁ ଉତ୍ସର୍ଗୀକୃତ କରିବେ । ସାଧାରଣ ଲୋକଙ୍କ ସୁବିଧା ନିମନ୍ତେ ଦେଶର ଶିଳ୍ପ ବିକାଶ ଓ ରପ୍ତାନୀକୁ ଉତ୍ସାହିତ କରିବା ପାଇଁ ବ୍ୟାପକ ବ୍ୟବସ୍ଥାମାନ କରାଯାଇଛି । ଆୟକର ରିହାତି ସାଙ୍ଗକୁ କେତେକ କ୍ଷେତ୍ରରେ କର ଛାଡ଼ ଦିଆଯାଇଛି । ଦୁର୍ବଳଶ୍ରେଣୀ ଲୋକଙ୍କ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ବ୍ୟବସ୍ଥା ଗ୍ରାମାଞ୍ଚଳରେ ଅଧିକ କର୍ମସଂସ୍ଥାନ ଉପରେ ଗୁରୁତ୍ୱ, ଶିଳ୍ପ ଶ୍ରମିକମାନଙ୍କ ଲାଗି ନୂତନ ସୁବିଧା ସୁଯୋଗ, ଦରିଦ୍ର ଲୋକଙ୍କ ପାଇଁ ସାମାଜିକ ନିରାପତ୍ତା ବ୍ୟବସ୍ଥା, କ୍ଷୁଦ୍ର ଶିଳ୍ପ ତଥା ଅନୁସୂଚିତ ଶିଳ୍ପପାଇଁ ପୁଞ୍ଜି ବିନିଯୋଗ ବୃଦ୍ଧି, ବାଧ୍ୟତାମୂଳକ ଜମା ଯୋଜନା ଉଚ୍ଛେଦ, ରେଡ଼ିଓ, ଟେଲିଭିଜନ, ଓ ଭିଡ଼ିଓ ସେଟ୍‌ଗୁଡ଼ିକୁ ଲାଇସେନ୍‌ସ ଛାଡ଼, ସବୁ ଶ୍ରେଣୀର ଲୋକଙ୍କୁ ବ୍ୟକ୍ତିଗତ ଆୟକର ରିହାତି ପ୍ରଭୃତି ଏହି ବଜେଟ୍‌ର ଅନ୍ତର୍ଭୁକ୍ତ ହୋଇଛି ।

ବ୍ୟକ୍ତିଗତ ଆୟ ଏବଂ ସମ୍ପତ୍ତି ଉପରେ ଟିକସ ଯେପରି ଏକ ବିପରିତ ପ୍ରତିକ୍ରିୟା ସୃଷ୍ଟି ନ କରେ ସେଥିପ୍ରତି ଦୃଷ୍ଟିରଖି ଆୟକର ଓ ସମ୍ପତ୍ତି କରକୁ ସରଳ ଏବଂ ଯୁକ୍ତିଯୁକ୍ତ କରାଯିବା ଦିଗରେ ଏକ ନୂତନ ଆଭିମୁଖ୍ୟ ଗ୍ରହଣ କରାଯାଇଛି । ନିମ୍ନ ଏବଂ ମଧ୍ୟମ ଶ୍ରେଣୀର ଆୟକାରୀମାନଙ୍କର କରଭାର ଲାଘବ କରିବା ଉଦ୍ଦେଶ୍ୟରେ ବ୍ୟକ୍ତିଗତ ଆୟକର ଛାଡ଼ ସୀମା ୧୫,୦୦୦ ଟଙ୍କାରୁ ୧୮ ହଜାର ଟଙ୍କାକୁ ବୃଦ୍ଧି କରାଯାଇଛି । ଏଥି ସଙ୍ଗେ ସଙ୍ଗେ ଟିକସ ଫାଙ୍କିବା ଅପରାଧକୁ ଦମନ କରିବା ଦିଗରେ ସରକାରୀ କଳକୁ ଅଧିକ ସକ୍ରିୟ କରାଯିବ ।

ଆୟକର ଛାଡ଼ ସୀମା ବୃଦ୍ଧି ଫଳରେ ମୋଟ ୪୦ ଲକ୍ଷ ଆୟକର ଦାତାଙ୍କ ମଧ୍ୟରୁ ୧୦ ଲକ୍ଷ ଲୋକଙ୍କୁ କୌଣସି ଆୟକର ଦେବାକୁ ପଡ଼ିବ ନାହିଁ । ବାର୍ଷିକ ୧୮ ହଜାର ଟଙ୍କା ଆୟରେ କୌଣସି ଆୟକର ଦେବାକୁ ପଡ଼ି ନ ଥିବା ବେଳେ ୧୮,୦୦୧ରୁ ୨୫ ହଜାର ଟଙ୍କା ପର୍ଯ୍ୟନ୍ତ ବାର୍ଷିକ ଆୟକର ଶତକଡ଼ା ୨୫ ଭାଗ, ୨୫,୦୦୧ରୁ ୫୦,୦୦୦ ଟଙ୍କା ପର୍ଯ୍ୟନ୍ତ ଆୟକର ଶତକଡ଼ା ୩୦ ଭାଗ ଏବଂ ୫୦,୦୦୧ରୁ ଏକଲକ୍ଷ ଟଙ୍କା ପର୍ଯ୍ୟନ୍ତ ଆୟକର ଶତକଡ଼ା ୪୦ ଭାଗ ଏବଂ ଏକଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଆୟ ଉପରେ ଶତକଡ଼ା ୫୦ ଭାଗ ଆୟକର ଲାଗୁହେବ । ଏହା ବ୍ୟତୀତ ସମସ୍ତ ଅଣନିଗମ ଟିକସ ଦାତାଙ୍କର ଆୟକର ଉପରେ କୌଣସି ସରଚାର୍ଜ ଲାଗୁ ହେବନାହିଁ । ଏହିସବୁ ପ୍ରସ୍ତାବ କାର୍ଯ୍ୟକାରୀ ହେଲେ ବ୍ୟକ୍ତିଗତ ଆୟ ଉପରେ ସର୍ବାଧିକ ଆୟକର ହାର ଶତକଡ଼ା ୬୧.୮୭୫ରୁ ଶତକଡ଼ା ୫୦କୁ ହ୍ରାସ ପାଇବ ।

ଏହିଭଳି ଏକ ବାସ୍ତବବାଦୀ ଆୟକର ରିହାତି ହେତୁ ରାଜସ୍ୱ ବାବଦରେ ୨୦୦ କୋଟି ଟଙ୍କା ଏବଂ ସରଚାର୍ଜ ବାବଦରେ ୧୯୭ କୋଟି ଟଙ୍କା ସରକାର କ୍ଷତି ସହିବେ ।

ବର୍ତ୍ତମାନ ପ୍ରଚଳିତ ଥିବା ସଂପତ୍ତି କର ସୀମା ଦେଢ଼ଲକ୍ଷ ଟଙ୍କାରୁ ଅଢ଼େଇଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି । ସଂପତ୍ତି କରର ସର୍ବାଧିକ ନାମକୁ ମାତ୍ର ସୀମା ପ୍ରଚଳିତ ଶତକଡ଼ା ୫ ଭାଗରୁ ୨ ଭାଗକୁ କମାଇ ଦିଆଯାଇଛି । କେତେକ ନିର୍ଦ୍ଦିଷ୍ଟ ସମ୍ପତ୍ତି ଉପରେ ସମ୍ପତ୍ତି କର ସୀମା ୨ଲକ୍ଷ ୬୫ ହଜାର ଟଙ୍କା ରଖା ଯାଇଛି । ଏହା ବ୍ୟତୀତ ଜାତୀୟ ଜମା ଯୋଜନା ଏବଂ ଭାରତୀୟ ଇଉନିଟ ଟ୍ରଷ୍ଟରେ ରଖା ଯାଇଥିବା ୩୫ ହଜାର ଟଙ୍କା ଉପରେ ଏହି କର ଲାଗୁ ହେବନାହିଁ । ପାଞ୍ଚଲକ୍ଷ ଟଙ୍କାର ସମୁଦାୟ ସମ୍ପତ୍ତି ଉପରେ ସମ୍ପତ୍ତି କର ଲାଗୁ ହେବ ନାହିଁ । ଏହି ପ୍ରସ୍ତାବ ଅନୁଯାୟୀ ୧୯୮୫-୮୬ ଆର୍ଥିକ ବର୍ଷରେ ସରକାରଙ୍କୁ କୌଣସି କ୍ଷତି ସହିବାକୁ ପଡ଼ି ନାହିଁ । କିନ୍ତୁ ୧୯୮୬-୮୭ ମସିହାରେ ଏହି ବାବଦରେ ୭୦କୋଟି ଟଙ୍କା କ୍ଷତି ହେବ ବୋଲି ହିସାବ କରାଯାଇଛି ।

ବର୍ତ୍ତମାନ ଇଷ୍ଟେଟ୍ ଶୁଳ୍କରୁ ମାତ୍ର ୨୦ କୋଟି ଟଙ୍କା ମିଳୁଥିବାବେଳେ ଏହି ଦିଗରେ ପ୍ରଶାସନିକ ଖର୍ଚ୍ଚ ଅତ୍ୟଧିକ ହୋଇଥିବାରୁ ମାର୍ଚ୍ଚ ୬ ତାରିଖ ପରେ ମୃତ୍ୟୁବରଣ କରିଥିବା ବ୍ୟକ୍ତିଙ୍କର ଉତ୍ତରାଧିକାରୀଙ୍କ କ୍ଷେତ୍ରରେ ଏହା ଲାଗୁ ହେବ ନାହିଁ ।

ଶିଳ୍ପ ଶ୍ରମିକମାନଙ୍କ ପାଇଁ କେତେକ ସୁଯୋଗ ମଧ୍ୟ ଏହି ବଜେଟରେ ରହିଛି । କୌଣସି କଂପାନୀ ବନ୍ଦ ହେଲେ

ଶ୍ରମିକମାନେ ଯେପରି ତାଙ୍କର ପ୍ରାପ୍ୟ ନିଶ୍ଚୟ ପାଇବେ, ତା ସଙ୍ଗେ ସଙ୍ଗେ ବୋନସର ଭାରାଂ ବ୍ୟବସ୍ଥା କରାଯାଇଛି । ସର୍ବୋଚ୍ଚ ସୀମା ୭୫୦ ଟଙ୍କାରୁ ୧୬୦୦ ଟଙ୍କା ଯାଏ ବଢ଼ାଇ ଦିଆଯାଇଛି ଏବଂ କଂପାନୀ ବନ୍ଦ ହେବା ଏବଂ ଛଟେଇ କ୍ଷେତ୍ରରେ ଶ୍ରମିକମାନଙ୍କର ଯାହା ପ୍ରାପ୍ୟ ତାକୁ ଏକ ପାଣ୍ଠିରେ ଜମା କରିବା ପାଇଁ ଶ୍ରମିକ ଏବଂ ମାଲିକଙ୍କୁ ଇଚ୍ଛାଧୀନ ସୁଯୋଗ ଦିଆଯାଇଛି ଏବଂ ଏଥିପାଇଁ ଏକ ନୂତନ ଯୋଜନା ପ୍ରବର୍ତ୍ତନ କରାଯାଇଛି । ଶ୍ରମିକଙ୍କୁ ଛଟେଇ କଲେ ଦେବେ କ୍ଷତିପୂରଣର ସର୍ବୋଚ୍ଚ ସୀମା ୨୦ ହଜାରରୁ ୫୦ ହଜାର ଟଙ୍କା ଯାଏ ବୃଦ୍ଧି ପାଇଛି । ଏହି କ୍ଷତିପୂରଣ ଟଙ୍କା ଉପରେ ଟିକସ ଲାଗୁ ହେବ ନାହିଁ । ଶ୍ରମିକମାନଙ୍କର ପରିଚାଳନାରେ ଅଂଶ ଗ୍ରହଣ ଲାଗି ଆବଶ୍ୟକ ହେଲେ ଆର୍ଥିକ ପ୍ରୋତ୍ସାହନ ପ୍ରଦାନ କରାଯିବ ।

ଦେଶରେ ବୈଜ୍ଞାନିକ ଗବେଷଣାକୁ ଉତ୍ସାହିତ କରିବା ଲାଗି ଯେ କୌଣସି ସ୍ଥାନର ବିକାଶ ପାଇଁ ବୈଜ୍ଞାନିକମାନଙ୍କୁ ତିନି ବର୍ଷ ଯାଏ ଅର୍ଥ ଯୋଗାଇ ଦେବାକୁ ବ୍ୟବସ୍ଥା କରଯାଇଛି ଏବଂ ତଦନୁସାରେ ତା ଉପରେ ଟିକସ ଧାର୍ଯ୍ୟ କରାଯିବ ।

ବିଶ୍ୱବିଦ୍ୟାଳୟ ସ୍ତରର ପାଠ୍ୟପୁସ୍ତକ, ହିନ୍ଦୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାର ଅଭିଧାନ ଇତ୍ୟାଦିର ଲେଖକମାନେ ଏଥିପାଇଁ ଯେଉଁ ରୟାଲଟି, କପିରାଇଟ୍ ଫିସ୍ ପାଇବେ ତା ଉପରେ ଆଗାମୀ ପାଞ୍ଚ ବର୍ଷ ପାଇଁ ଶତକଡ଼ା ୧୫ ଭାଗ ଆୟ କର ରିହାତି ରଖାଯାଇଛି । ଇନ୍ଦିରା ଗାନ୍ଧୀ ସ୍ମାରକୀ ଟ୍ରଷ୍ଟକୁ ଦାନ, ଜାତୀୟ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଅନ୍ୟାନ୍ୟ ପାଣ୍ଠିକୁ ଦିଆଯାଉଥିବା ଭଳି ବିଷୟକୁ ନେଇ ତଦନୁଯାୟୀ ଟିକସ ରିହାତି ମିଳିବ । କିନ୍ତୁ ପ୍ରଧାନ ମନ୍ତ୍ରୀଙ୍କ ସାହାଯ୍ୟ ପାଣ୍ଠିକୁ ଦାନ ଉପରେ କୌଣସି ଟିକସ ପଡ଼ିବ ନାହିଁ ।

ଟିକସ ଫାଙ୍କୁଥିବା ଲୋକଙ୍କ ବିଚାର ଲାଗି ସ୍ୱତନ୍ତ୍ର ଅଦାଲତ ପ୍ରତିଷ୍ଠା ସଂପର୍କରେ ରାଜ୍ୟ ସରକାରମାନଙ୍କ ସହିତ କେନ୍ଦ୍ର-ସରକାର ଆଲୋଚନା କରିବେ । ୧୯୮୩ର ଅର୍ଥ ଆଇନ ଅନୁଯାୟୀ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ର ବ୍ୟତୀତ ସାଧାରଣ ଦାତବ୍ୟ ଓ ଧର୍ମ ଟ୍ରଷ୍ଟଗୁଡ଼ିକ ଆୟ କରରୁ ମୁକ୍ତ ନୁହନ୍ତି । ଏଭଳି ଟ୍ରଷ୍ଟର ବ୍ୟବସାୟିକ ସଂପତ୍ତି ଉପରେ ଏଣିକି ସଂପତ୍ତି କର ଲାଗୁ ହେବ ।

କଂପାନୀଗୁଡ଼ିକ ଉପରେ ମୂଳ ଆୟକର ହାର ଶତକଡ଼ା ୫ ଭାଗ କମାଇ ଦିଆଯାଇଛି । ବ୍ୟବସାୟ ଓ ପୁଞ୍ଜି ଲଗାଣ କରୁଥିବା କଂପାନୀଗୁଡ଼ିକ ବ୍ୟତୀତ ଅନ୍ୟ କଂପାନୀଗୁଡ଼ିକର ଆୟକର ଶତକଡ଼ା ୬୫ ଭାଗରୁ ୫୫ ଭାଗକୁ କମାଇ ଦିଆଯାଇଛି ।

ଉଭୟ କର୍ପୋରେଟ୍ ଟିକସ ତଥା ଅଣ-କର୍ପୋରେଟ୍ ଉଦ୍ୟୋଗ ଉପରେ ଟିକସ ହ୍ରାସ କରିବା ସଙ୍ଗେ ସଙ୍ଗେ କେତେକ ରିହାତି ବ୍ୟବସ୍ଥା ଉଠେଇ ଦିଆଯାଇଛି । ୧୯୮୦ରେ ଏକ ବ୍ୟବସ୍ଥା ଅନୁଯାୟୀ ୧୯୮୦ ଏପ୍ରିଲଠାରୁ ୧୯୮୫ ମାର୍ଚ୍ଚ ୩୧ ତାରିଖ ମଧ୍ୟରେ ପ୍ରତିଷ୍ଠିତ ଯନ୍ତ୍ରପାତି ଓ କାରଖାନା ଲାଗି ଅତିରିକ୍ତ ପ୍ରତିଷ୍ଠିତ କ୍ଷୟକ୍ଷତି ଭରଣା ଦିଆ ଯାଉଥିଲା । ଟିକସ ହାର ହ୍ରାସ ଓ ସାଧାରଣ ଭାବେ କ୍ଷୟକ୍ଷତି ଭରଣା, ଭତ୍ତାବୃଦ୍ଧି ଯୋଗୁ ଆଗାମୀ ଆର୍ଥିକ ବର୍ଷ ଠାରୁ ଏହି ବ୍ୟବସ୍ଥାକୁ ଉଠାଇ ଦିଆଯିବ । ସେହିଭଳି ଗ୍ରାମ ଉନ୍ନୟନ କାର୍ଯ୍ୟ କରୁଥିବା କଂପାନୀ ଓ ସମବାୟ ସଂସ୍ଥାଗୁଡ଼ିକରେ ବ୍ୟୟକୁ ଟିକସ ଧାର୍ଯ୍ୟ ଯୋଗ୍ୟ ଆୟରୁ ବର୍ତ୍ତମାନ ଆଉ ବାଦ ଦିଆଯିବ ନାହିଁ ।

ପୁସ୍ତକ ପ୍ରକାଶନରୁ ମିଳୁଥିବା ଲାଭ ଉପରେ ଟିକସ ଛାଡ଼ ବ୍ୟବସ୍ଥା ୧୯୮୫ ମାର୍ଚ୍ଚ ୧୬ ତାରିଖରେ ଶେଷ ହୋଇଛି । ଏଣିକି ଏ ବ୍ୟବସ୍ଥା ଆଉ ଲାଗୁ ହେବ ନାହିଁ । ତାଛଡ଼ା କେତେକ ବିଦେଶୀ କଂପାନୀମାନଙ୍କଠାରୁ ଭାରତୀୟ କଂପାନୀମାନେ ପାଉଥିବା ଲାଭାଂଶ ଉପରେ ଥିବା ଟିକସ ରିହାତିକୁ ମଧ୍ୟ ପ୍ରତ୍ୟାହାର କରି ନିଆଯାଇଛି ।

୧୯୮୫ ଏପ୍ରିଲ ପହିଲା ତାରିଖ ପୂର୍ବରୁ ଉତ୍ପାଦନକ୍ଷମ ହୋଇଥିବା ଶିଳ୍ପ ସଂସ୍ଥା, କାର୍ଯ୍ୟକାରୀ ହୋଇଥିବା ହୋଟେଲ ଏବଂ ଚଳାଚଳ ଆରମ୍ଭ କରିଥିବା ଜାହାଜ ଉପରେ ଟିକସ ଧାର୍ଯ୍ୟ ନକରିବାକୁ ବର୍ତ୍ତମାନ ଯେଉଁ ବ୍ୟବସ୍ଥା ଅଛି, ଆଉ ପାଞ୍ଚ ବର୍ଷ ତାହାକୁ ଅବ୍ୟାହତ ରଖାଯିବ ।

ରପ୍ତାନିକାରୀମାନେ ତାଙ୍କ ରପ୍ତାନି ଲାଭରୁ ଶତକଡ଼ା ୫୦ ଭାଗ ଯାଏ ଅର୍ଥ ନିଜର ବ୍ୟବସାୟ ଲାଗି କୌଣସି ସଂରକ୍ଷିତ ଜମାକୁ ହସ୍ତାନ୍ତର କଲେ ତା ଉପରେ ଟିକସ ଲାଗୁ ହେବ ନାହିଁ । ଚିନି, ଲୁଣ ଓ ଉତ୍ପାଦନ କରୁଥିବା କଂପାନୀଗୁଡ଼ିକ ତାଙ୍କ ଲାଭର ଶତଡ଼କା ୨୦ ଭାଗ କୃଷି ଓ ଗ୍ରାମ ଉନ୍ନୟନ ଜାତୀୟ ବ୍ୟାଙ୍କରେ ଜମା କଲେ ତାହା ଟିକସ ରିହାତିର ସୁଯୋଗ ପାଇବ । ୧୯୮୫ ମାର୍ଚ୍ଚ ୩୧ ତାରିଖ ପରେ ଆଉ ଟିକସ ଧାର୍ଯ୍ୟ କରାଯିବ ନାହିଁ ।

ଏକ ଲକ୍ଷ ଟଙ୍କାରୁ ଅଧିକ ମୂଲ୍ୟର ବିଜ୍ଞାପନ, ପ୍ରଚାର, ବିକ୍ରି ବୃଦ୍ଧି ଅଭିଯାନ, ବିମାନ ଓ ମଟର କାର ଚଳାଇବା ତଥା ରକ୍ଷଣାବେକ୍ଷଣ ଓ ହୋଟେଲକୁ ଦେୟ ଖର୍ଚ୍ଚ ଉପରେ ଶତକଡ଼ା ୨୦ ଭାଗ କର ମୁକ୍ତି ବ୍ୟବସ୍ଥାକୁ ପ୍ରତ୍ୟାହାର କରି ନିଆଯାଇଛି ।

ବଜେଟରେ ପେଟ୍ରୋଲଜାତ ଦ୍ରବ୍ୟ, ସି ସିମେଣ୍ଟ, ବିଡ଼ି, ପାନ ମସଲା, ମଦ୍ୟପାନୀୟ, ରୁପା ଓ ବଣ୍ଡ କାଗଜର ଦାମ ବୃଦ୍ଧି ପାଇଛି । ଏହି ଦ୍ରବ୍ୟ ଗୁଡ଼ିକ ଉପରେ ବହି ଶୁଳ୍କ ଓ ଅବକାରୀ ଶୁଳ୍କ ହାର ମଧ୍ୟ ବଢ଼ିଛି । ଆହୁରି କେତେକ ପରୋକ୍ଷ ଟିକସ ବୃଦ୍ଧିରୁ କେନ୍ଦ୍ର ସରକାର ଅଧିକ ୩୧୧ କୋଟି ଟଙ୍କା ରାଜସ୍ୱ ପାଇବେ । ମୋଟ ୪୪୩ କୋଟି ଅତିରିକ୍ତ ରାଜସ୍ୱରୁ ରାଜ୍ୟମାନଙ୍କୁ ୧୩୨ କୋଟି ଟଙ୍କା ମିଳିବ । ବିଶେଷ ବଜେଟ ନିଅଣ୍ଟ ଦ୍ୱାରା ଦେଶର ଆର୍ଥିକ ପରିସ୍ଥିତିରେ ପ୍ରଭାବ ପଡ଼ିବ ନାହିଁ ଏବଂ ତାର ମୁକାବିଲା କରାଯାଇ ପାରିବ ।

ବହିଃଶୁଳ୍କ କ୍ଷେତ୍ରରେ ଅଶୋଧିତ ପେଟ୍ରୋଲିୟମ ଉପରେ ସହାୟକ ଟିକସ ଟନ୍ ପିଛା ୩୦୦ ଟଙ୍କାରୁ ବଢ଼ିଥିବା

ହେବେ ମୂଲ୍ୟାନୁଯାୟୀ ବହିଃଶୁଳ୍କ ଆଦାୟ କ୍ଷେତ୍ରରେ ଶତକଡ଼ା ୧୦ ଭାଗ ବୃଦ୍ଧି ପାଇଛି । ଲୁହାପଥର ଓ ମାଙ୍ଗାନିଜ ସମେତ ୧୨ଟି ଦ୍ରବ୍ୟ ଉପରୁ ରପ୍ତାନୀ ଶୁଳ୍କ ସଂପୂର୍ଣ୍ଣ ଛାଡ଼ କରାଯାଉଛି । ଅତ୍ୟାଧୁନିକ କଂପ୍ୟୁଟର ଉପରେ ମଧ୍ୟ ବହିଃଶୁଳ୍କ ଲାଗୁ ହେବ ନାହିଁ । ଦେଶରେ ତିଆରି ହେଉଥିବା ବଲ୍ ବିୟରିଂ ଶିଳ୍ପର ସୁରକ୍ଷା ପାଇଁ ବିଦେଶରୁ ଆମଦାନୀ ହେଉଥିବା ଏହି ଶିଳ୍ପଜାତ ପଦାର୍ଥ ଉପରେ ଶତକଡ଼ା ୫୦ ଭାଗ ବହିଃଶୁଳ୍କ ବୃଦ୍ଧି ପାଇବ । ଏହା ଫଳରେ ବାର୍ଷିକ ୨୦ କୋଟି ଟଙ୍କା ରାଜସ୍ୱ ମିଳିବ । ବିଭିନ୍ନ ପ୍ରକଳ୍ପ ପାଇଁ ଆବଶ୍ୟକ ହେଉଥିବା ଯନ୍ତ୍ରପାତି ଆମଦାନୀ କରିବା ପାଇଁ ବହିଃଶୁଳ୍କ ହାର ଶତକଡ଼ା ୬୫ ଭାଗ ପର୍ଯ୍ୟନ୍ତ ଲାଗୁ ହେଉଥିଲା । କିନ୍ତୁ ପ୍ରକଳ୍ପଗୁଡ଼ିକର ପୁଞ୍ଜି ବିନିଯୋଗ ଖର୍ଚ୍ଚ ହ୍ରାସ କରିବାପାଇଁ ଏହି ବହିଃଶୁଳ୍କକୁ ମୂଲ୍ୟାନୁଯାୟୀ ଶତକଡ଼ା ୪୫ ଭାଗକୁ ହ୍ରାସ କରିବା ପ୍ରସ୍ତାବ ଦିଆଯାଇଛି । ଏହା ବ୍ୟତୀତ ଶକ୍ତି ଉତ୍ପାଦନ ପ୍ରକଳ୍ପଗୁଡ଼ିକ ପାଇଁ ଆବଶ୍ୟକ ଯନ୍ତ୍ରପାତି ଉପରେ ବହିଃଶୁଳ୍କ ଶତକଡ଼ା ୨୫ ଭାଗ କମାଇ ଦିଆଯାଇଛି ଏବଂ ସାର କାରଖାନାରେ ବ୍ୟବହୃତ ଯନ୍ତ୍ରପାତି ଆମଦାନୀ ଉପରେ ଏହାପୁରା ଛାଡ଼ କରାଯାଇଛି । ସାଧାରଣ ଟେଲିଫୋନ ଏକ୍ସଚେଞ୍ଜ ପାଇଁ ମୂଲ୍ୟାନୁଯାୟୀ ଶତକଡ଼ା ୪୫ ଭାଗ ବହିଃଶୁଳ୍କ ଛାଡ଼ କରାଯାଇଛି । ଏହାଫଳରେ ବାର୍ଷିକ ୨୯୦ କୋଟି ଟଙ୍କା ସରକାରଙ୍କୁ ବହନ କରିବାକୁପଡ଼ିବ । କାଠ ଖଣ୍ଡ ଓ ତନ୍ତୁ ଉପଟେ ବହିଃଶୁଳ୍କ ଓ ଆମଦାନୀ ଶୁଳ୍କ ସଂପୂର୍ଣ୍ଣ ଛାଡ଼ ସମେତ ଅଣ-ପାରଂପରିକ ସୂତ୍ରରୁ ଶକ୍ତି ଉତ୍ପାଦନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାପାଇଁ ଉଦ୍ଦିଷ୍ଟ ବାୟୁଚାଳିତ ଜଳକଳ୍‌ଗୁଡ଼ିକୁ ମଧ୍ୟ ବହିଃଶୁଳ୍କ ମୁକ୍ତ କରାଯାଇଛି । ଆମଦାନୀ ହେଉଥିବା ଚମଡ଼ା ଉପରୁ ସଂପୂର୍ଣ୍ଣ କର ଛାଡ଼ କରାଯିବା ସଙ୍ଗେ ସଙ୍ଗେ ଯୋତା ଓ ଅନ୍ୟାନ୍ୟ ଚମଡ଼ା ଶିଳ୍ପରେ ବ୍ୟବହୃତ ବିଭିନ୍ନ ସ୍ୱତନ୍ତ୍ର ମେସିନ ଉପରୁ କରଭାର ଲାଘବ କରାଯାଇଛି । ପୂର୍ବେ ଏହା ଉପରେ ଶତକଡ଼ା ୮୧.୫ ଭାଗ କର ଲାଗୁ ହେଉଥିବା ବେଳେ ଚଳିତ ବଜେଟରେ ଏହା ହ୍ରାସ ପାଇ ଶତକଡ଼ା ୩୫ ଭାଗ ହେବ । ଆମଦାନୀକୃତ ପଶମ ଓ ବସ୍ତ୍ର ଉପରେ ପୂର୍ବେ ଶତକଡ଼ା ୫୦ ଭାଗ କର ଲାଗୁ ହେଉଥିବା ସ୍ଥଳେ ବର୍ତ୍ତମାନ ଏହା ଶତକଡ଼ା ୪୦ ଭାଗ ହେବ ।

କମ୍ ଜାଳେଣୀ ଖର୍ଚ୍ଚ ହେଉଥିବା ବ୍ୟବସାୟିକ ଯାନବାହାନର ଉତ୍ପାଦନ ଲାଗି ଆବଶ୍ୟକ ଯନ୍ତ୍ରପାତି ଉପରେ ବର୍ତ୍ତମାନ ଯେଉଁ ଶତକଡ଼ା ୪୫ ଭାଗ ବହିଃଶୁଳ୍କ ଧାର୍ଯ୍ୟ ହେଉଛି ତାହା ରହିବ ଏବଂ ତତ୍ ସହିତ ଆନୁଷଙ୍ଗିକ ଜାଳେଣୀ ପଂପ ଏବଂ ଷ୍ଟିୟରିଂ ଯନ୍ତ୍ରପାତି ଉପରେ ଏହି ରିହାତି ଶୁଳ୍କ ଲାଗୁ ହେବ । ଏହା ଫଳରେ ସରକାରଙ୍କୁ ବାର୍ଷିକ ୨୪.୫ କୋଟି ଟଂଙ୍କା ବହନ କରିବାକୁ ପଡ଼ିବ । ଯକ୍ଷ୍ମା ଓ କୁଷ୍ଠ ରୋଗରେ ବ୍ୟବହୃତ 'ରିଫାମ୍ପିସିନ୍' ଔଷଧ ପ୍ରସ୍ତୁତ କରିବା ପାଇଁ ଆବଶ୍ୟକ ହେଉଥିବା ତିନୋଟି ଅତ୍ୟାବଶ୍ୟକ ଦ୍ରବ୍ୟ ଉପରେ ଆମଦାନୀ କର ସଂପୂର୍ଣ୍ଣରୂପେ ଛାଡ଼ କରାଯିବ । କେତେକ ଧରଣର ହୋମିଓପ୍ୟାଥି ଔଷଧ ଉପରେ ମଧ୍ୟ ବହିଃଶୁଳ୍କ ହ୍ରାସ କରାଯିବ । ଏହା ଫଳରେ ସରକାରଙ୍କୁ ୧୪ କୋଟି ୯ ଲକ୍ଷ ଟଙ୍କା କ୍ଷତି ସହିବାକୁ ପଡ଼ିବ ।

କଂପ୍ୟୁଟର, ପଶମ କମ୍ବଳ, ସାଇକେଲ ଯନ୍ତ୍ରାଂଶ ଓ ପ୍ୟାଣ୍ଡ ଓ ବ୍ୟାଗରେ ବ୍ୟବହୃତ ହେଉଥିବା ଜିପ୍-ଚେନ ଉପରୁ ଅବକାରୀ ଟିକସ ଛାଡ଼ କରଯାଇଛି । ପ୍ରତି ମେଟ୍ରିକଟନ୍ ସିମେଣ୍ଟ ପିଛା ମୌଳିକ ଅବକାରୀ ଟିକସ ୨୨୫ ଟଙ୍କା ବଢ଼ିଥିବା ବେଳେ ଛାପା, ଲେଖା କାଗଜ ଏବଂ ବସ୍ତ୍ର କାଗଜ ଉପରେ ଏହା ଟନ୍ ପିଛା ୨୦୦ ଟଙ୍କା ବୃଦ୍ଧି ପାଇଛି । ଖେଳାଳୀମାନେ ପାଉଥିବା ଆନ୍ତର୍ଜାତିକ ପୁରସ୍କାର ଓ ଦାନକୁ କର ରିହାତି ମିଳିଥିବା ବେଳେ ପ୍ରଧାନମନ୍ତ୍ରୀଙ୍କ ରିଲିଫ ପାଣ୍ଠିକୁ ପ୍ରଦତ୍ତ ଅର୍ଥ ଦାନ ଉପରେ ମଧ୍ୟ କର ଛାଡ଼ କରାଯାଇଛି । ମାର୍ବଲ ପଥର ଏବଂ ଟାଇଲ, ଭିତ୍ତିନିର୍ମାଣାର୍ଥେ ବ୍ୟବହୃତ ସାମଗ୍ରୀ ଉପରେ ଅବକାରୀ ଶୁଳ୍କ ଲାଗୁ ହେଉଛି ଯାହା ଫଳରେ ରାଜକୋଷକୁ ପ୍ରତିବର୍ଷ ୧୯ କୋଟି ଟଙ୍କା ଆସିବ । ମିନି ଇସ୍ପାତ କାରଖାନାଗୁଡ଼ିକ ପୂର୍ବରୁ ଅବକାରୀ ଟିକସ କ୍ଷେତ୍ରରେ ଯେଉଁ ଆନୁପାତିକ ସୁବିଧା ପାଉଥିଲେ ତାହା ହ୍ରାସ କରାଯାଇଛି । କିନ୍ତୁ ତଥାପି ମଧ୍ୟ ପ୍ରତି ମେଟ୍ରିକ୍ ଟନ୍ ପିଛା ସେମାନେ ୫୦ ଟଙ୍କା ଶୁଳ୍କ ରିହାତି ପାଇବେ । ଗ୍ୟାସଭରା ମଦ୍ୟ ପାନୀୟ ଉପରେ ଅବକାରୀ ଟିକସ ୨୦୦ ମି. ଲି. ଲିଟର ବୋତଲ ପିଛା ୨୫ ପଇସାରୁ ୩୦ ପଇସାକୁ ବୃଦ୍ଧି ପାଇବ । ସୋଡ଼ା ପାନୀୟ ଉପରେ ବୋତଲ ପିଛା ଟିକସ ୫ ପଇସାରୁ ୧୦ ପଇସାକୁ ବୃଦ୍ଧି କରାଯାଇଛି । ଏହା ଫଳରେ ବାର୍ଷିକ ୧୬ କୋଟି ୭୫ ଲକ୍ଷ ଟଙ୍କା ଆୟ ହେବ ବୋଲି ହିସାବ କରାଯାଇଛି । ମୋଟ ୧୦୦ଟି ଦ୍ରବ୍ୟ ଉପରୁ ସ୍ୱତନ୍ତ୍ର ଅବକାରୀ ଟିକସ ଛାଡ଼ କରି ଦିଆଯାଇଛି । କାଚ ଖଣ୍ଡ ଉପରେ ନିର୍ଦ୍ଦିଷ୍ଟ ଅବକାରୀ ଶୁଳ୍କ ଧାର୍ଯ୍ୟ ହେବା ଫଳରେ ବାର୍ଷିକ ଅତିରିକ୍ତ ୧୨.୫ କୋଟି ଟଙ୍କା ଆୟ ହେବ । ପ୍ରତି ହଜାର ବିଡ଼ି ଉପରେ ୩ ଟଙ୍କା ୭୪ ପଇସାରୁ ୪ ଟଙ୍କା ଅବକାରୀ ଶୁଳ୍କ ବୃଦ୍ଧି ପାଇବ । ଟର୍ଚ୍ଚ ଲାଇଟ୍ ବ୍ୟାଟେରୀ ଉପରେ ମଧ୍ୟ ଅବକାରୀ ଶୁଳ୍କ ମୂଲ୍ୟାନୁଯାୟୀ ଶତକଡ଼ା ୨୦ ଭାଗରୁ ୨୫ ଭାଗ ବୃଦ୍ଧି ପାଇବ ଏବଂ ଅନ୍ୟାନ୍ୟ ଧରଣ ବ୍ୟାଟେରୀ ଉପରେ ଏହି ଶୁଳ୍କ ପରିମାଣ ଶତକଡ଼ା ୧୫ ଭାଗରୁ ୨୦ ଭାଗ ବଢ଼ିବ । ଏହା ଫଳରେ ମୋଟ ୧୬.୮୪ କୋଟି ଟଙ୍କା ଆୟ ହେବ ।

ସରକାର ଶସ୍ୟ ବୀମା ଯୋଜନା ବ୍ୟାପକଭାବେ ପ୍ରବର୍ତ୍ତନ କରିବାକୁ ନିଷ୍ପତ୍ତି କରିଛନ୍ତି । ପ୍ରତ୍ୟେକ ଶସ୍ୟ ଋଣ ପାଇଁ ଏକ ବୀମା ଯୋଜନା ଅନ୍ତର୍ନିହିତ ରହିବ । ଶସ୍ୟ ଋଣର ଶତକଡା ୧୫୦ ଭାଗ ପର୍ଯ୍ୟନ୍ତ ଏହି ବୀମା ପ୍ରଯୁଜ୍ୟ ହେବ । ଗହମ, ଧାନ, ତୈଳମଞ୍ଜି ଏବଂ ଡାଲି ଜାତୀୟ ଶସ୍ୟ ପାଇଁ ପ୍ରଥମେ ଏହି ବୀମା ପ୍ରବର୍ତ୍ତନ ହେବ ।

ସରକାର ଏକ ସାମାଜିକ ନିରାପତ୍ତା ଯୋଜନା କାର୍ଯ୍ୟକାରୀ କରିବାକୁ ସ୍ଥିର କରିଛନ୍ତି । ଏହା ଫଳରେ ଭୂମିହୀନ ଶ୍ରମିକ, କ୍ଷୁଦ୍ର ଓ ନାମମାତ୍ର କୃଷକ, ପାରଂପରିକ କାରିଗର ଏବଂ ଯେଉଁ ଦରିଦ୍ର ଲୋକ କୌଣସି ବୀମା ଯୋଜନା ଅନ୍ତର୍ଭୁକ୍ତ ହୋଇନଥିବେ, ସେମାନଙ୍କର ଯଦି କୌଣସି ଦୁର୍ଘଟଣାରେ ମୃତ୍ୟୁ ହୁଏ ତେବେ ସେମାନଙ୍କ ଉପରେ ନିର୍ଭରଶୀଳ ଲୋକଙ୍କୁ ୩୦୦୦ ଟଙ୍କା ଦିଆଯିବ । ଏହି ଯୋଜନା ଦେଶର ୧୦୦ଟି ଜିଲ୍ଲାରେ ପ୍ରଥମେ ଆରମ୍ଭ ହେବ । କ୍ଷୁଦ୍ର ଶିଳ୍ପକୁ ଅଧିକ

ପ୍ରୋତ୍ସାହନ ଦେବା ପାଇଁ ପୁଞ୍ଜି ବିନିଯୋଗର ପରିମାଣକୁ ୨୦ ଲକ୍ଷ ଟଙ୍କାରୁ ୩୫ ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି । ଏହା ବ୍ୟତୀତ ଆନୁଷଙ୍ଗିକ ଶିଳ୍ପର ସର୍ବୋଚ୍ଚ ସୀମା ୨୫ ଲକ୍ଷ ଟଙ୍କାରୁ ୪୫ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି ।

ଅଣ–ଏମ୍.ଆର. ଟି.ପି. ଓ ବୈଦେଶିକ ମୁଦ୍ରା ନିୟନ୍ତ୍ରଣ ଲାଗୁ ହେଉନଥିବା କଂପାନୀଗୁଡ଼ିକ କୌଣସି ସାଧାରଣ ଅର୍ଥଲଗାଣକାରୀ ସଂସ୍ଥା ଉପରେ ନିର୍ଭରଶୀଳ ନହେବା ପାଇଁ ସେମାନଙ୍କୁ ଖୋଲାବଜାରରୁ ସମ୍ବଳ ସଂଗ୍ରହ କରିବା ଲାଗି ସର୍ବୋଚ୍ଚ ସୁଧର ହାର ଶତକଡ଼ା ୧୩ ଭାଗରୁ ୧୫ ଭାଗ ବୃଦ୍ଧି କରିବା ଲାଗି ଅନୁମତି ଦିଆଯିବ । ଏହା ବ୍ୟତୀତ ରୁଗ୍ଣ ଶିଳ୍ପ ସଂସ୍ଥାଗୁଡ଼ିକୁ କାର୍ଯ୍ୟକ୍ଷମ କରିବା ଲାଗି କେତେକ ସୁଦୂରପ୍ରସାରୀ ପଦକ୍ଷେପ ଗ୍ରହଣ କରାଯିବ । ଏଥିପାଇଁ ଏକ ଆର୍ଥିକ ଏବଂ ଶିଳ୍ପ ପୁନରୁଦ୍ଧାର ବୋର୍ଡ଼ ଗଠିତ ହେବ ।

୧୯୮୫ ମସିହା ମାର୍ଚ୍ଚ ୩୧ ତାରିଖ କିମ୍ବା ତା'ପରେ ଅବସର ଗ୍ରହଣ କରୁଥିବା କେନ୍ଦ୍ର ସରକାରୀ କର୍ମଚାରୀମାନଙ୍କ ମୂଳ ଦରମା ସହିତ ମହଙ୍ଗାଭତ୍ତାର ସମୁଦାୟ ଅଂଶ ମିଶାଇ ପେନ୍‌ସନ ସ୍ଥିର ହେବ । ପୂର୍ବରୁ କେବଳ ମହଙ୍ଗାଭତ୍ତାର କିୟଦ୍ ଅଂଶ ଦରମା ସହିତ ମିଶି ପେନ୍‌ସନ ପରିମାଣ ସ୍ଥିର ହେଉଥିଲା । ପେନ୍‌ସନର ସର୍ବୋଚ୍ଚ ସୀମା ୧୫୦୦ ଟଙ୍କା ବର୍ତ୍ତମାନ ଆଉ ଲାଗୁ ହେବ ନାହିଁ । ଗ୍ରାଚ୍ୟୁଇଟି ସୀମା ୩୬,୦୦୦ ଟଙ୍କାରୁ ୫୦,୦୦୦ ଟଙ୍କାକୁ ବୃଦ୍ଧି ପାଇବ ।

ଏହି ବଜେଟ୍‌ରେ ପ୍ରଚଳିତ ଟିକସ ହାରରେ ମୋଟ ରାଜସ୍ୱ ଆୟ ୪୭,୬୩୫ କୋଟି ଟଙ୍କା ଏବଂ ବ୍ୟୟ ୫୧,୨୯୫ କୋଟି ଟଙ୍କା ହୋଇ ବର୍ଷ ଶେଷରେ ୩,୬୬୦ କୋଟି ଟଙ୍କା ନିଅଣ୍ଟ ପଡ଼ିବା କଥା । ପ୍ରସ୍ତାବିତ ୪୪୩ କୋଟି ଟଙ୍କା ଅତିରିକ୍ତ ରାଜସ୍ୱରୁ କେନ୍ଦ୍ର ନିଅଣ୍ଟ ଭରଣା ପାଇଁ ୩୧୧ କୋଟି ଟଙ୍କା ମିଳୁଥିବାରୁ ମୋଟ ନିଅଣ୍ଟ ପରିମାଣ ୩୩୪୯ କୋଟି ଟଙ୍କା ହେବ ।

[ ଭାରତ ପାର୍ଲାମେଣ୍ଟରେ କେନ୍ଦ୍ର ଅର୍ଥମନ୍ତ୍ରୀଙ୍କ ପ୍ରଦତ୍ତ ଭାଷଣରୁ । ] ମୁଖ୍ୟ ସଂପାଦକ



କେନ୍ଦ୍ର ଅର୍ଥମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ୧୯୮୫-୮୬ ବଜେଟ୍ ରୂପରେ ଆତ୍ମନିମଗ୍ନ ରହିଛନ୍ତି ।

# ଶ୍ରମିକ ଶିକ୍ଷା ଏବଂ ପ୍ରଶିକ୍ଷଣ

ଶ୍ରୀ ରାଇମୋହନ ଦାସ

ଗଣତନ୍ତ୍ରର ବିକାଶ ନିମନ୍ତେ ଶିକ୍ଷା ଯେପରି ଏକାନ୍ତ ଆବଶ୍ୟକ ଶ୍ରମ ଆଇନଗୁଡ଼ିକର ସଫଳ କାର୍ଯ୍ୟକାରିତା ସକାଶେ ଶ୍ରମିକ ଶିକ୍ଷା ଏବଂ ପ୍ରଶିକ୍ଷଣ ବା ତାଲିମ କାର୍ଯ୍ୟକ୍ରମର ସେତିକି ଗୁରୁତ୍ୱ-ପୂର୍ଣ୍ଣ ଭୂମିକା ରହିଛି । ଶ୍ରମିକମାନେ ନିଜ, ନିଜ ଦାୟିତ୍ୱ ଓ ଅଧିକାର ସଂପର୍କରେ ସଚେତନ ନହେଲେ ଶ୍ରମ ଆଇନଗୁଡ଼ିକରେ ରହିଥିବା ଶ୍ରମିକ କଲ୍ୟାଣ ଯୋଜନା, ଆଇନଗତ ସୁବିଧା ଏବଂ ସେଗୁଡ଼ିକ ହାସଲ ନିମନ୍ତେ କି ପନ୍ଥା ଅବଲମ୍ବନ କରାଯାଇପାରିବ, ତାହା ଶ୍ରମିକମାନଙ୍କୁ ଅଜଣା ହୋଇ ରହିଯିବ । ଅପର ପକ୍ଷରେ ଶ୍ରମ ଆଇନର ପ୍ରୟୋଗ ନିମନ୍ତେ ଯେଉଁ ସରକାରୀ କଳ ରହିଛି, ବୀମା, ଡାକ୍ତରଖାନା, ଶ୍ରମିକ ଭବିଷ୍ୟନିଧି ଇତ୍ୟାଦି ଶ୍ରମିକମାନଙ୍କ ନିକଟରେ ପହଞ୍ଚିବା ନିମନ୍ତେ ଗୋଟିଏ ମାଧ୍ୟମ ଦରକାର । ତାହା ହେଲା ଶିକ୍ଷା ବା ତାଲିମ ମାଧ୍ୟମରେ ଯୋଗାଯୋଗ ପ୍ରତିଷ୍ଠା । ଏହି ଯୋଜନା ତିନିଟି ପର୍ଯ୍ୟାୟରେ କାର୍ଯ୍ୟକାରୀ ହେଉଛି । ସରକାର ତଥା ତାଙ୍କର ସହଯୋଗୀ ଅନୁଷ୍ଠାନ, ନିଯୋକ୍ତା ଏବଂ ଶ୍ରମିକ ସଂଗଠନ ଏହି ତିନୋଟି ମାଧ୍ୟମର ବାର୍ତ୍ତାବହ ।

ସରକାରୀ ସ୍ତରରେ ଶ୍ରମିକ ଶିକ୍ଷା ଏବଂ ତାଲିମ ପାଇଁ ଦିଆଯାଇଥିବା ଯୋଜନାଗୁଡ଼ିକ ହେଲା ଏହିପରି—

(କ) କେନ୍ଦ୍ରୀୟ ଶ୍ରମିକ ଶିକ୍ଷା ପରିଷଦ—କେନ୍ଦ୍ରୀୟ ଶ୍ରମିକ ଶିକ୍ଷା ପରିଷଦ କେନ୍ଦ୍ର ସରକାରଙ୍କ ସହାୟତାରେ ଶ୍ରମିକ-ମାନଙ୍କ ପ୍ରଶିକ୍ଷଣ ଏବଂ ତାଲିମ କାର୍ଯ୍ୟ ଦୁଇଟି ପର୍ଯ୍ୟାୟରେ କାର୍ଯ୍ୟକାରୀ କରିଥାଏ । ପ୍ରଥମତଃ ଏହାର ଆଞ୍ଚଳିକ ତାଲିମ ପ୍ରତିଷ୍ଠାନ ମାନଙ୍କରେ ବିଭିନ୍ନ କଳକାରଖାନାରୁ ସୁପାରିଶ ହୋଇ ଆସିଥିବା ଶ୍ରମିକମାନଙ୍କୁ ଶ୍ରମିକ ଶିକ୍ଷକ ରୂପେ ପ୍ରଶିକ୍ଷଣ କରିବା । ଦ୍ୱିତୀୟତଃ, ଶ୍ରମିକ ଶିକ୍ଷା କାର୍ଯ୍ୟକ୍ରମ ପରିଚାଳନା କରିବା ନିମନ୍ତେ ଶ୍ରମିକ ସଂଗଠନମାନଙ୍କୁ ଅନୁଦାନ ପ୍ରଦାନ । ଆମ ରାଜ୍ୟରେ ଦୁଇଟି ଆଞ୍ଚଳିକ ଶ୍ରମିକ ଶିକ୍ଷା କେନ୍ଦ୍ର ରହିଛି । ସେଥିରୁ ଗୋଟିଏ ରାଉରକେଲାରେ ଏବଂ ଅନ୍ୟଟି କଟକଠାରେ ଅବସ୍ଥିତ ।

(ଖ) ପୁନରାବୃତ୍ତି ପାଠ୍ୟକ୍ରମ:—ପୁନରାବୃତ୍ତି ପାଠ୍ୟକ୍ରମ ଯୋଜନା ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟ ଜରିଆରେ ବ୍ୟବସ୍ଥା କରାଯାଇଥାଏ । ଏହି ଯୋଜନା ଅନୁସାରେ ଶ୍ରମ ନିର୍ଦ୍ଦେଶାଳୟର ଆଞ୍ଚଳିକ ଶ୍ରମ ଦପ୍ତରମାନେ ନିଜ ନିଜ ଅଞ୍ଚଳରେ ଶ୍ରମିକ ସଂଘ ପ୍ରତିନିଧି ତଥା କଳକାରଖାନାର ଶ୍ରମ କଲ୍ୟାଣ ଅଧିକାରୀ-ମାନଙ୍କ ପାଇଁ ଶ୍ରମ ଆଇନର ବିଭିନ୍ନ ସମସ୍ୟା ଏବଂ ଦିଗ ସଂପର୍କରେ ଆଲୋଚନା, ପର୍ଯ୍ୟାଲୋଚନା ଏବଂ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ସଞ୍ଚାଳନ କରନ୍ତି ।

(ଗ) ଗ୍ରାମିଣ ଶ୍ରମିକମାନଙ୍କ ପାଇଁ ତାଲିମ:—ଆଦିବାସୀ ଏବଂ ହରିଜନ ଅଧ୍ୟୁଷିତ ଗ୍ରାମିଣ ଶ୍ରମିକ ବସତି ଅଞ୍ଚଳରେ ଗ୍ରାମିଣ ଶ୍ରମିକମାନଙ୍କ ତାଲିମ ନିମନ୍ତେ ପ୍ରତିବର୍ଷ ଗ୍ରାମିଣ ଶ୍ରମିକ ତାଲିମ ଶିବିର ଶ୍ରମ ନିର୍ଦ୍ଦେଶାଳୟ ଆୟୋଜନ କରିଥାଆନ୍ତି । ଏହି କାର୍ଯ୍ୟକ୍ରମ ୧୯୭୫ ମସିହାରୁ କାର୍ଯ୍ୟକାରୀ ହୋଇ ଆସୁଛି । ସେହି ବର୍ଷ ପ୍ରଥମେ ଜାତୀୟ ଶ୍ରମିକ ପ୍ରତିଷ୍ଠାନ, ନୂଆଦିଲ୍ଲୀର ସହାୟତାରେ ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟ ତାପଙ୍ଗଠାରେ ଏହି କାର୍ଯ୍ୟକ୍ରମର ଶୁଭାରମ୍ଭ କଲେ । ଏହି ଯୋଜନା ଅନୁସାରେ ଶ୍ରମ ବିଭାଗର ପଦସ୍ଥ ଅଫିସର, ଶିକ୍ଷାବିତ୍ ତଥା ବିଭିନ୍ନ ଶ୍ରମ ସଂଗଠନ ତଥା ନିଯୋକ୍ତା ପ୍ରତିନିଧିମାନେ ଗ୍ରାମିଣ ଶ୍ରମିକମାନଙ୍କୁ ବିଭିନ୍ନ ଶ୍ରମ ଆଇନ ବିଶେଷ କରି ସର୍ବନିମ୍ନ ମଜୁରୀ ଆଇନ ସଂପର୍କରେ ପ୍ରଶିକ୍ଷଣ ଦିଅନ୍ତି ।

(ଘ) ଶ୍ରମ ପରିସଂଖ୍ୟାନ ସଂପର୍କୀୟ ତାଲିମ:—ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟ ଏହି ତାଲିମ ବା ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆୟୋଜନ କରିଥାନ୍ତି । ତଦନୁସାରେ ପ୍ରତିବର୍ଷ ରାଜ୍ୟରେ ବିଭିନ୍ନ ଶିଳ୍ପାଞ୍ଚଳରେ ଶ୍ରମିକ ସଂଗଠନ ପ୍ରତିନିଧି ତଥା ନିଯୋକ୍ତା ପ୍ରତିନିଧିମାନଙ୍କୁ ଶ୍ରମ ପରିସଂଖ୍ୟାନ ତଥା ଆନୁଷଙ୍ଗିକ ଶ୍ରମ ଆଇନ ସଂପର୍କରେ ପ୍ରଶିକ୍ଷଣ ଦିଆଯାଇଥାଏ । ଶ୍ରମ ନର୍ଦ୍ଦେଶାଳୟର ପରିସଂଖ୍ୟାନବିତ୍ ତଥା ପରିସଂଖ୍ୟାନ ପର୍ଯ୍ୟବେକ୍ଷକ ଏବଂ ପରିସଂଖ୍ୟାନ ଅନ୍ୱେଷକ ଏହି ତାଲିମ କାର୍ଯ୍ୟ ପରିଚାଳନା କରନ୍ତି । ବିଭିନ୍ନ ଶ୍ରମ ଆଇନ ଅନୁସାରେ ଦାଖଲ କରାଯାଇଥିବା ବିବରଣୀ ଏବଂ ତତ୍ ସଂପର୍କିତ ଆଇନଗତ ବ୍ୟବସ୍ଥା ସଂପର୍କରେ ଶ୍ରମିକ ସଂଗଠନ ତଥା ନିଯୋକ୍ତାମାନଙ୍କୁ ଅବଗତ କରିବା ଏହି କାର୍ଯ୍ୟକ୍ରମର ପ୍ରଧାନ ଲକ୍ଷ୍ୟ ।

(ଙ) ପାଠଚକ୍ର:—ଶ୍ରମ ସମସ୍ୟା ସଂପର୍କରେ ଜଡିତ ତଥା ବିବାଦମାନ ବ୍ୟବସ୍ଥା ବିଷୟରେ ବୌଦ୍ଧିକ ଆଲୋଚନା ନିମନ୍ତେ ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟ ପ୍ରତିବର୍ଷ ବିଭିନ୍ନ ଶିଳ୍ପ ଅଞ୍ଚଳରେ ଶ୍ରମ ଆଲୋଚନା ଚକ୍ର ବା ପାଠଚକ୍ରର ଆୟୋଜନ କରିଥାନ୍ତି । ଏହି ଯୋଜନାରେ ବିଶିଷ୍ଟ ଶ୍ରମିକ ନେତା, ଶିକ୍ଷାବିତ୍ ତଥା ଶ୍ରମ ଆଇନଜ୍ଞମାନେ ଭାଗ ନେଇଥାନ୍ତି । ଏହି ପାଠଚକ୍ରରେ ପଠିତ ପ୍ରବନ୍ଧ ସଙ୍କଳିତ ହୋଇ ପ୍ରକାଶିତ ହୋଇଥାଏ ।

ସରକାରଙ୍କର ଏହି ଶ୍ରମିକ ଶିକ୍ଷା ଯୋଜନା ବ୍ୟତୀତ ଜାତୀୟ ଉତ୍ପାଦିକା ପରିଷଦ ମଧ୍ୟ ଶ୍ରମିକ ସଂଗଠନ ତଥା ନିଯୋକ୍ତା ପ୍ରତିନିଧିମାନଙ୍କ ନିମନ୍ତେ ଶ୍ରମ ସମସ୍ୟା ସଂପର୍କରେ ବୌଦ୍ଧିକ ଆଲୋଚନା ଚକ୍ରମାନ ଆୟୋଜନ କରିଥାନ୍ତି । ଏହି କାର୍ଯ୍ୟକ୍ରମଗୁଡ଼ିକ ମୁଖ୍ୟତଃ ନିଯୋକ୍ତାମାନଙ୍କର ଅନୁଦାନରେ ସମ୍ପାଦିତ ହୋଇଥାଏ । ଏହା ବ୍ୟତୀତ ବଡ ବଡ ଶିଳ୍ପାନୁଷ୍ଠାନମାନଙ୍କର ନିଜସ୍ୱ ଶ୍ରମିକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ରହିଛି ।

ଶ୍ରମ ସଂଗଠନମାନେ ମଧ୍ୟ ସଙ୍ଗଠନର ସଭ୍ୟମାନଙ୍କ ବୌଦ୍ଧିକ ବିକାଶ ନିମନ୍ତେ ଆଲୋଚନା ଚକ୍ର, ସମ୍ମେଳନ ଆଦି ଆୟୋଜନ କରିଥାନ୍ତି । ଏଇ କେତେ ବର୍ଷ ହେଲା ରାଉରକେଲାଠାରେ ବଣ୍ଠିଆ ସ୍ମୃତି ସମିତି ତରଫରୁ ଶ୍ରମିକମାନଙ୍କ ପ୍ରଶିକ୍ଷଣ ନିମନ୍ତେ ଗୋଟିଏ ତାଲିମ କେନ୍ଦ୍ର ସ୍ଥାପନ କରାଯାଇଛି ।

ରାଜ୍ୟରେ ଶ୍ରମିକମାନଙ୍କ ପ୍ରଶିକ୍ଷଣ ନିମନ୍ତେ ଏହି ସବୁ ଯୋଜନା ରହିଥିବା ସତ୍ତ୍ୱେ ଓଡ଼ିଶାର ଶ୍ରମିକମାନେ ବିଶେଷକରି ଗାଁ ଗହଳର ଶ୍ରମିକମାନେ ଏବେ ମଧ୍ୟ ଅଶିକ୍ଷିତ ଏବଂ ଅସଙ୍ଗଠିତ ହୋଇ ରହିଛନ୍ତି । ଏହି ଅବ୍ୟବସ୍ଥା ସୁଧାରିବା ନିମନ୍ତେ କେନ୍ଦ୍ରସରକାର ବ୍ଲକସ୍ତରରେ ଶ୍ରମିକ ଶିକ୍ଷା ଯୋଜନା ଚାଲୁ ରଖିବା ନିମନ୍ତେ ଆମ ରାଜ୍ୟର ୮୦ଟି ବ୍ଲକରେ ଅବୈତନିକ ସଙ୍ଗଠକ ନିଯୁକ୍ତିର ବ୍ୟବସ୍ଥା କରିଛନ୍ତି । ଏମାନେ ଗ୍ରାମିଣ ଶ୍ରମିକମାନଙ୍କୁ ସଚେତନ କରାଇ ପାରିବେ ବୋଲି ଆଶା କରାଯାଉଛି ।

ଶ୍ରମ କମିଶନର, ଓଡ଼ିଶା,
ଭୁବନେଶ୍ୱର



ପାରଳା ଖେମୁଣ୍ଡି ଠାରେ ପାରଳା ମହାରାଜଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ପରେ ଏକ ସାଧାରଣ ସଭାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭଙ୍କର ଅଭିଭାଷଣ ।

# ଟ୍ରେଡ୍ ୟୁନିୟନ୍ ଆନ୍ଦୋଳନରେ ବାଧାବିଘ୍ନ

ଶ୍ରୀ ମୁରାର ଜେନା

ଟ୍ରେଡ ୟୁନିଅନ (ଶ୍ରମିକ ସଂଘ) ଆନ୍ଦୋଳନ ବୃଦ୍ଧି ପାଇବାରେ ସାଧାରଣତଃ ଆମ ଦେଶରେ ଯେଉଁ ବାଧାବିଘ୍ନ ଉପୁଜୁଛି, ତାହାକୁ ସାଧାରଣତଃ ଦୁଇଟି ଭାଗରେ ବିଭକ୍ତ କରାଯାଇ ପାରେ । ଗୋଟିଏ ହେଉଛି ଆନ୍ତରିକ ବିରୋଧ (Internal obstacle) ଓ ଅନ୍ୟଟି ହେଉଛି ବାହ୍ୟ ବିରୋଧ (External obstacles)

## ଆନ୍ତରିକ ବିରୋଧ

(୧) ଦେଶରେ ଶିକ୍ଷାସ୍ତରର ନିମ୍ନତା–( Low Standard) of education in the country) ଭାରତବର୍ଷରେ ଶିକ୍ଷାର ସ୍ତର ନିମ୍ନ କହିଲେ ଚଳେ । ଶିଳ୍ପ କ୍ଷେତ୍ରକୁ ମହତ୍ୱପୂର୍ଣ୍ଣ କରିବାକୁ ହେଲେ ଶିକ୍ଷାର ସ୍ତର ଉଚ୍ଚ ହେବା ଆବଶ୍ୟକ । ତେଣୁ ଭାରତବର୍ଷରେ ଶିଳ୍ପ ଶ୍ରମିକମାନଙ୍କର ଶିକ୍ଷାସ୍ତର ବିଶେଷ ନିକୃଷ୍ଟ ଥିବା ଦୃଷ୍ଟିରୁ ଶ୍ରମିକ ସଂଗଠନର ଆନ୍ଦୋଳନ ବିଶେଷ ଫଳପ୍ରଦ ହୋଇ ପାରୁ ନାହିଁ । ପୁଣି ଏହି ଅବସ୍ଥାରେ ଶ୍ରମିକ ସଂଗଠନ ଦ୍ୱାରା ଯେଉଁ ଆନ୍ଦୋଳନର ସୂତ୍ରପାତ ହୋଇଛି, ତାହା ହରତାଳ ଓ ତାଲାବନ୍ଦୀକୁ ବିଶେଷ ସାହାଯ୍ୟ କରୁଛି । ତେଣୁ ଏ ପ୍ରକାର ପରିସ୍ଥିତି ଯୋଗୁଁ, ଶ୍ରମିକ ସଂଗଠନର ଉତ୍ତରୋତ୍ତର ବୃଦ୍ଧିରେ ବାଧା ଉପୁଜୁଛି ।

(୨) ନିର୍ଧନତା ଓ ମଜୁରୀର ନିମ୍ନସ୍ତର ( Poverty and Low level of wages )–ଶ୍ରମିକ ସଂଘର ସଫଳୀକୃତ ବିକାଶ ପାଇଁ ଧନ ବା ପାଣ୍ଠିର ଆବଶ୍ୟକତା ଏକାନ୍ତ ପ୍ରୟୋଜନୀୟ । ଏହି ପାଣ୍ଠି ଆଦାୟ ହିଁ ସଦସ୍ୟମାନଙ୍କର ଚାନ୍ଦା ଉପରେ ପୁରାପୁରି ନିର୍ଭର କରେ, କିନ୍ତୁ ଭାରତବର୍ଷର ଶ୍ରମିକମାନେ ଏତେ ଗରିବ ଯେ, ସେମାନେ ନିୟମିତ ଭାବେ ସଂଘର ଚାନ୍ଦା ଦେବାକୁ ସମର୍ଥ ହୋଇ ପାରନ୍ତି ନାହିଁ ।

ଯେଉଁ ଶ୍ରମିକ ତାର ଦୈନନ୍ଦିନ ଜୀବନଯାତ୍ରା ପାଇଁ ଋଣ ଭାରରେ ବୁଡି ରହିଥାଏ, ତାହାଠାରୁ ନିୟମିତ ଭାବେ ସଂଘର ଚାନ୍ଦା ଆଶା କରିବା ବିଡମ୍ବନା ମାତ୍ର । ଏହି କାରଣରୁ ହିଁ ଶ୍ରମିକ ସଂଘରେ ସଭ୍ୟହେବା ପାଇଁ ବହୁ ଶ୍ରମିକ ଅନିଚ୍ଛା ପ୍ରକାଶ କରିଥାନ୍ତି । ପୁଣି ଶ୍ରମିକମାନେ ଏପରି ଅଳ୍ପ ମଜୁରୀ ପାଇଥାନ୍ତି ଯେ ଯେଉଁଥିରେ କି ସେମାନେ ଜୀବନର ନ୍ୟୁନତମ ଆବଶ୍ୟକତା ପୂରଣ କରି ପାରନ୍ତି ନାହିଁ । ତେଣୁ ଏ ପରିସ୍ଥିତିରେ ସଂଘକୁ ଚାନ୍ଦା ଦେବା ପ୍ରଶ୍ନ କେଉଁଠି ଉଠୁଛି ?

ସାଧାରଣତଃ ଶ୍ରମିକ ସଂଗଠନକୁ ପାଣ୍ଠି ଉପରେ ନିର୍ଭର କରିବାକୁ ହୋଇଥାଏ । ତେଣୁ ଆମଦେଶରେ ଉପଯୁକ୍ତ ପାଣ୍ଠି- ଅଭାବରୁ ବହୁ ଶ୍ରମିକ ସଂଘ ନିଧନ ଅବସ୍ଥାରେ, କେବଳ ନାମ ମାତ୍ର ହିଁ ରହିଥାଏ ଓ ଶ୍ରମିକ ସଂଘର ଉତ୍ତରୋତ୍ତର ବିକାଶ ହୋଇ ପାରେ ନାହିଁ ।

(୩) ଶ୍ରମିକ ଶ୍ରେଣୀର ବିଭିନ୍ନତା–( Diversity among the workers)–ଭାରତୀୟ ଶ୍ରମିକ ଶ୍ରେଣୀ ମଧ୍ୟରେ ସମାନତା ଆଦୌ ଦେଖାଯାଏ ନାହିଁ । ଶ୍ରମିକମାନେ ଦେଶର ବିଭିନ୍ନ ସ୍ଥାନରୁ ଆସିଥାନ୍ତି, ଭିନ୍ନ ଭିନ୍ନ ଭାଷା କହୁଥାନ୍ତି, ଭିନ୍ନ ଭିନ୍ନ ଧର୍ମକୁ ମାନିଥାନ୍ତି, ବିଶେଷକରି ତାଙ୍କର ଆୟର ବିସ୍ତରରେ ମଧ୍ୟ ଭିନ୍ନତା ପରିଲକ୍ଷିତ ହୋଇଥାଏ । ତେଣୁ ଏପରି ଅବସ୍ଥାରେ ସେମାନଙ୍କୁ ସଂଘବଦ୍ଧ କରିବା ଅସମ୍ଭବ ହୋଇ ପଡେ ।

ପୁଣି ମିଲ୍‌ମାଲିକମାନେ ନିଜର ଲାଭ ଓ ସ୍ୱାର୍ଥ ହାସଲ ପାଇଁ ଶ୍ରମିକମାନଙ୍କର ଏ ପ୍ରକାର ବିଭିନ୍ନତା ନୀତିକୁ ବିଶେଷ ଉତ୍ସାହିତ କରୁଥିଲେ; ସେତେବେଳେ ପୁଣି ଧର୍ମ, ଭାଷା ଓ ଜାତି ସ୍ତରରେ ଶ୍ରମିକମାନେ ସଂଘବଦ୍ଧ ହେଉଥିଲେ ।

(୪) ଶ୍ରମିକ ବର୍ଗଙ୍କ ପ୍ରବାସୀ ସ୍ୱଭାବ– Migratary Character of the workers )–ଭାରତୀୟ ଶ୍ରମିକ- ମାନେ ସ୍ୱଭାବତଃ ପ୍ରବାସୀ ଅଟନ୍ତି । ତାଙ୍କର ଏହି ପ୍ରବାସୀ ସ୍ୱଭାବ ହେତୁ ଶ୍ରମିକ ସଂଘର ଆନ୍ଦୋଳନରେ ଗୁରୁତର ପ୍ରଭାବ ପଡେ । ଏହି ସ୍ୱଭାବର କାରଣ ହେଉଛି ଯେ, ଅଧିକାଂଶ ଭାରତୀୟ ଶ୍ରମିକ ଏ ପର୍ଯ୍ୟନ୍ତ ଆଦୌ ଆତ୍ମସଚେତନ ନୁହଁନ୍ତି । ଏକ ସ୍ୱତନ୍ତ୍ର ଓ ସ୍ଥାୟୀ ଶ୍ରେଣୀ ଭାବରେ ସଂଗଠିତ ନୁହନ୍ତି । ପୁଣି ନିଜ ପରିସ୍ଥିତିର ପରିବେଶ ସଂପର୍କରେ ଚେତନଶୀଳ ନୁହଁନ୍ତି । ସବିଶେଷରେ ଆଧୁନିକ ସମାଜରେ ନିଜର ଦାବୀ ଓ ଦାୟିତ୍ୱ ପ୍ରତି ସେମାନେ ନିଶ୍ଚିତ ବା କର୍ତ୍ତବ୍ୟଶୀଳ ନୁହଁନ୍ତି ।

ଯଦି ଶ୍ରମିକ ମନକୁ ଆସିଲା ଯେ ସେ ଗାଁକୁ ଯିବ, ତାହାହେଲେ ସେ ହଠାତ୍ କାମ ଛାଡି ଗାଁକୁ ଚାଲିଯାଏ । ପୁଣି ଯଦି କୌଣସି

କାରଣରୁ ସେ ଗୋଟିଏ ଶିଳ୍ପ ପ୍ରତିଷ୍ଠାନ ଉପରେ ଅସନ୍ତୁଷ୍ଟ ଭାବ ପ୍ରକାଶ କରେ, ତାହାହେଲେ ସେ ସେହି ଅନୁଷ୍ଠାନ ତ୍ୟାଗକରି ଅନ୍ୟ ଶିଳ୍ପାନୁଷ୍ଠାନକୁ ଯାଇ ଥାଏ । ଏହା ଛଡ଼ା ଯଦି କାରଖାନାରେ ବା ଶିଳ୍ପାନୁଷ୍ଠାନରେ ହରତାଳ ବା ତାଲବନ୍ଦୀ ଦେଖାଯାଏ, ତାହାହେଲେ ଶ୍ରମିକ କୌଣସି କଥାକୁ ବିଚାର ନକରି ସିଧାସଳଖ ଗାଁକୁ ପଳାଇଯାଏ ।

ଏ ପ୍ରକାର ପରିସ୍ଥିତିରେ କୌଣସି ସଂଗଠନ ଉତ୍ତରୋତ୍ତର ବୃଦ୍ଧି କରିପାରିବ ନାହିଁ । ପୁଣ ମଧ୍ୟ ଲକ୍ଷ୍ୟ କରାଯାଉଛି ଯେ, ଯେତେବେଳେ ଶ୍ରମିକ ସଂଗଠନକୁ ସ୍ୱୀକୃତି ଦେବାରେ କଳହ ଉପୁଜିଛି କିମ୍ବା ଶିଳ୍ପ କ୍ଷେତ୍ରରେ ବିବାଦର ସୂତ୍ରପାତ ହୋଇଛି, ସେତେବେଳେ ଶ୍ରମିକମାନଙ୍କ ମନପ୍ରାଣରେ ସଂଗଠନ ସଂଚ୍ଛାରରେ ପ୍ରବଳ ଉନ୍ମାଦ ଓ ଉତ୍ସାହ ପ୍ରକାଶ ପାଉଛି, କିନ୍ତୁ ଏସବୁ ମଝିରେ ଶ୍ରମିକ ଯଦି ଗାଁକୁ ଚାଲିଯାଏ ଓ ତାପରେ ଗାଁରୁ ଫେରିଆସେ, ତାହାହେଲେ ସେତେବେଳକୁ ତା'ର ସଂଗଠନ ସଂପର୍କରେ ପୂର୍ବ ଉତ୍ସାହ ଓ ଉନ୍ମାଦନା ଥିଲପରି ମନେହୁଏନା ।

ପୁଣି ମଧ୍ୟ ଏଠାରେ କୁହାଯାଇପାରେ ଯେ, ବହୁ ଶ୍ରମିକ ଗାଁରେ ନିଜର ସ୍ୱଳ୍ପ ଭରଣ ପୋଷଣ ପାଇଁ ସେହି ସମୟରେ ଆଶ୍ରୟ ପାଇ ଯାଇଥିବାରୁ, ସେମାନେ ଆଉ ଗାଁରୁ ଆସିବାକୁ ମନ ବଳାନ୍ତି ନାହିଁ । ତେଣୁ ଶ୍ରମିକ ସଂଘର ଦୃଢ଼ତା ଓ ଦ୍ରୁତ ବିକାଶ କରିବାକୁ ହେଲେ, ଶ୍ରମିକମାନେ ସ୍ଥାୟୀଭାବରେ ଶିଳ୍ପ କ୍ଷେତ୍ରରେ ବସବାସ କରିବା ଉଚିତ୍ କିନ୍ତୁ ଏହା ହୋଇ ନପାରିଲେ, ଶ୍ରମିକ ସଂଘର ଆନ୍ଦୋଳନ ଶ୍ରମିକ ସଂଘର ଉତ୍ତରୋତ୍ତର ଉନ୍ନତି ହୋଇ ପାରିବ ନାହିଁ ।

(୫) ଶ୍ରମିକ ସଂଘର ନେତା ଶ୍ରମିକ ନୁହନ୍ତି—(Absence of labour Union leaders among the workers) ଭାରତୀୟ ଶ୍ରମିକ ସଂଘ ଆନ୍ଦୋଳନର ପର୍ଯ୍ୟାପ୍ତ ବିକାଶରେ ସବୁଠାରୁ ବଡ଼ ବାଧା ହେଉଛି ଯେ ଶ୍ରମିକବର୍ଗଙ୍କ ମଧ୍ୟରୁ ଏପରି କୌଣସି ବ୍ୟକ୍ତି ନାହାନ୍ତି, ଯେ କି ଏହି ସଂଗଠନର ନେତୃତ୍ୱ ଗ୍ରହଣ କରିବେ । କିନ୍ତୁ ଏହା ପ୍ରାୟ ଦେଖାଯାଏ ଯେ, ଶ୍ରମିକ ସଂଘର ଆନ୍ଦୋଳନରେ ରାଜନୈତିକ ଦଳର ନେତାମାନେହିଁ ଅଧିକାଂଶ ସମୟରେ ନେତୃତ୍ୱ ନେଉଥାନ୍ତି ।

(୬) ଶ୍ରମିକ ସଂଗଠନ ମଧ୍ୟରେ ପ୍ରସନ୍ନ ଏବଂ ଏକତାର ଅଭାବ—(Lack of United Front of labour Union's in the Country)—ବର୍ତ୍ତମାନ ଦେଶରେ ଶ୍ରମିକ ସଂଘର ଓଉଗୋଟି ବିଭିନ୍ନ କେନ୍ଦ୍ର ସଂସ୍ଥା ଅଛି । ଏହାଛଡ଼ା ଅନ୍ୟାନ୍ୟ ସ୍ୱତନ୍ତ୍ର ଶ୍ରମିକ ସଂସ୍ଥା ମଧ୍ୟ ଅଛି । ଶ୍ରମିକ ସଂଘର ଆନ୍ଦୋଳନ ବିକାଶର ଇତିହାସ ପ୍ରତି ଦୃଷ୍ଟି ଦେଲେ ଜଣାପଡ଼େ କି, ଶ୍ରମିକ ସଂଘର ଏକତା କେବଳ କ୍ଷଣସ୍ଥାୟୀ । ବଳସ୍ତଧାରାର ଅନୁଚିନ୍ତା ଉପରେ ହିଁ ଗୋଟିଏ ଶ୍ରମ ସଂଗଠନରୁ ଅନ୍ୟ ଏକ ଶ୍ରମ ସଂଗଠନର ଉଦ୍ଭବ ହୋଇଛି । ପୁଣି ଦେଶରେ ଶ୍ରମିକ ସଂଗଠନମାନଙ୍କ ମଧ୍ୟରେ କୌଣସି ସଂଯୁକ୍ତ ମନୋଭାବ ପ୍ରକଟିତ ହେଉନାହିଁ ।

ଆହୁରି ମଧ୍ୟ ଦେଖାଯାଉଛି ଯେ, ଯେଉଁ କେନ୍ଦ୍ରୀୟ ଶ୍ରମ ସଂସ୍ଥାମାନ ଅଛି, ସେମାନଙ୍କ ମଧ୍ୟରେ ସର୍ବଦା ବିରୋଧ ଲାଗି-ରହିଛି । ପ୍ରତ୍ୟେକ ଶ୍ରମ ସଂଗଠନ, ନିଜ ନିଜର ଆଧିପତ୍ୟ ବିସ୍ତାର ଏବଂ ନିଜ ଆଦର୍ଶର ପ୍ରତିପାଦନ ପାଇଁ ଅନ୍ୟ ଶ୍ରମ ସଂଗଠନର ନୀତି ଆଦର୍ଶ ତଥା ଆନ୍ଦୋଳନକୁ ବିଫଳ କରିବାରେ ଚେଷ୍ଟା କରୁଛନ୍ତି । ବିଚରା ଶ୍ରମିକ ଏହି ପରସ୍ପର ସଂଗଠନର ସମସ୍ତ ନୀତି ଓ ଆଦର୍ଶର ଲଢେଇରେ ନଜର ଜୀବନକୁ ଅତ୍ୟନ୍ତ ବ୍ୟର୍ଥ ମନେକରୁଛନ୍ତି । ଏହାହିଁ ଶ୍ରମିକ ସଂଘର ଉତ୍ତରୋତ୍ତର ବିକାଶରେ ବାଧା ଦେବାରେ ଯେ ମହତ୍ୱପୂର୍ଣ୍ଣ କାରଣ ଅଟେ, ଏହା ନିଃସନ୍ଦେହ ।

(୭) ପରସ୍ପରର ସହଯୋଗୀ ଓ କଲ୍ୟାଣକାରୀ କାର୍ଯ୍ୟକ୍ରମକୁ ବୁଝିବାରେ ଅସାମର୍ଥ୍ୟ(Failure to realise the importance of mutual help and welfare activities) କୌଣସି ସଂଗଠନର ଦୃଢ଼ ବିକାଶ ଓ ସଫଳତା ଲାଭପାଇଁ, ତାର ସଦସ୍ୟମାନଙ୍କର ପାରସ୍ପରିକ ସହଯୋଗ ରହିବା ଅତ୍ୟନ୍ତ ଆବଶ୍ୟକ । ଶ୍ରମିକଙ୍କର ଦୀନହୀନ ଅବସ୍ଥା, ମାଲିକମାନଙ୍କର ସ୍ୱାର୍ଥ ମନୋଭବ ଏବଂ ତଜ୍ଜନିତ ଶ୍ରମିକଙ୍କର ନିମ୍ନସ୍ତରର ଜୀବନ ଧାରଣଇତ୍ୟାଦି ବିଷୟ ପ୍ରାୟ ଜଣା ଅଧିକେ ସମସ୍ତଙ୍କୁ ଜଣା ।

ଶ୍ରମିକ ସଂଘ ଶ୍ରମିକମାନଙ୍କର ଜୀବନ ସ୍ତରରେ ଉନ୍ନତି ଆଣିବା ସଙ୍ଗେ ସଙ୍ଗେ, ସେମାନଙ୍କର ସର୍ବବିଧ କଲ୍ୟାଣ ସାଧନ କରିବାକୁ ସେମାନଙ୍କର ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ବୋଲି ମନେକରିବା ଉଚିତ । ତେଣୁ ଏ ସମସ୍ତ କାର୍ଯ୍ୟ ସଂପାଦନ କରିବାରେ ଶ୍ରମିକମାନଙ୍କର ସଂଘକୁ ସକ୍ରିୟ ସହଯୋଗ ଦେବା ଏକାନ୍ତ ଲୋଡ଼ା । କିନ୍ତୁ ଏ ସମସ୍ତ କ୍ଷେତ୍ରରେ ଶ୍ରମିକମାନଙ୍କର ପ୍ରାୟ ଅସହଯୋଗ ପରିଲକ୍ଷିତ ହେଉଛି । ଏହି ସବୁ କାରଣ ଯୋଗୁଁ ମଧ୍ୟ ଶ୍ରମିକସଂଘ ଆନ୍ଦୋଳନର ବିକାଶରେ ବିଶେଷ ବାଧା ସୃଷ୍ଟି ହେଉଛି ।

(୮) ଜୀବନର ନିମ୍ନସ୍ତର ଓ କାର୍ଯ୍ୟ କରିବାର ଅସନ୍ତୋଷଜନକ ପରିସ୍ଥିତି—(Low standard of life and dissatisfactory working condition of the workers) ଶ୍ରମିକ ମାନଙ୍କୁ କାରଖାନାରେ ଘଣ୍ଟା ଘଣ୍ଟା ଧରି କାମକରିବାକୁ ପଡ଼ିଥାଏ । ତେଣୁ କାରଖାନାମାନଙ୍କରେ ଏତେ ଘଣ୍ଟା ଧରି କାମ କରିବା ଫଳରେ ଶ୍ରମିକମାନଙ୍କର ସ୍ଫୁର୍ତ୍ତି ଓ ଶକ୍ତିର ବିଶେଷ ହ୍ରାସ ହୁଏ ଏବଂ ସେମାନେ ଶ୍ରମିକ ସଂଘର କ୍ରିୟା କଳାପରେ ଭାଗନେଇ ପାରନ୍ତି ନାହିଁ ।

ପୁନଶ୍ଚ ଶ୍ରମିକମାନଙ୍କୁ ଏପରି ଅସୁସ୍ଥ ପରିସ୍ଥିତିରେ କାମକରିବାକୁ ପଡ଼େ ଯେ, ତାର ମାନସିକ ଅବସ୍ଥା ବେଳକୁ ବେଳ ଅତ୍ୟନ୍ତ ଦୁର୍ବଳ ହୋଇପଡ଼େ ଏବଂ ସେ କୌଣସି ସମସ୍ୟାକୁ ଉତ୍ତମରୂପେ ଚିନ୍ତନ କରିବାରେ କ୍ଷମ ହୋଇପାରେ ନାହିଁ । ଶ୍ରମିକମାନଙ୍କର ନିମ୍ନ ଜୀବନମାନ ତାହାର ଶାରିରୀକ ବିକାଶରେ ବିଶେଷ ବ୍ୟାଘାତ ସୃଷ୍ଟିକରେ ଓ ଅନ୍ୟ ଭାଷାରେ କହିଲେ, ତାର ଆଦୌ ଶାରିରୀକ ବିକାଶ ହୋଇପାରେ ନାହିଁ । ଯେତେବେଳେ ସେ ତାର ଶାରିରୀକ ଓ ମାନସିକ କ୍ଷେତ୍ରରେ ବିଶେଷ ଦୁର୍ବଳ, ସେ ସେତେବେଳେ ସେ ଦୃଢ଼ ସଂଗଠନ କାର୍ଯ୍ୟରେ କିପରି ସକ୍ରିୟ ସହଯୋଗ କରିପାରିବ ଓ ପୁଣି ଏ କାର୍ଯ୍ୟରେ ସଫଳତା ଆନୟନ କରିପାରିବ ସେ ପ୍ରକାର ଆଶା କରିବା ବିଡ଼ମ୍ବନା ନୁହେଁ କି ?

## ବାହ୍ୟ ବତରୋଧ

୧) ମଧ୍ୟସ୍ଥିଙ୍କ ବିରୋଧ ( Hostile attitude of the Jobbers) ଶିଳ୍ପ ବିକାଶ ସଙ୍ଗେସଙ୍ଗେ ଭାରତରେ ମଧ୍ୟସ୍ଥି ନାମରେ ଏକ ଶୋଷୀ ସମାଜରେ ବିଶେଷ ଆସ୍ଥାନ ଜମାଇ ବସିଲା । ଶ୍ରମିକମାନଙ୍କୁ ଗାଁରୁ ଆଣିବା, ପୁଣି ସେମାନଙ୍କୁ ସହରରେ କାମ ଓ ଘର ଯୋଗାଇବା ଋଣଦେବା, ବେମାରି ଓ ଦୁର୍ଘଟଣା ସମୟରେ ତାଙ୍କର ସେବା କରିବା ଇତ୍ୟାଦି ସମସ୍ତ କାର୍ଯ୍ୟ ମଧ୍ୟସ୍ଥିଙ୍କ ଦ୍ୱାରା ସଂପାଦିତ ହେଉଥିଲା ।

ଶ୍ରମିକମାନଙ୍କୁ ଶୋଷଣ କରିବାରେ ହିଁ ସେମାନଙ୍କର ଅସ୍ତିତ୍ୱ ନିର୍ଭର କରୁଥିଲା । ଶ୍ରମିକମାନଙ୍କ ମଧ୍ୟରେ ଶ୍ରମିକ ସଂଗ୍ରାମକୁ ଦୃଢ଼ କରିବାରେ ଉଦ୍ଦେଶ୍ୟ ହେଲା, ମଧ୍ୟସ୍ଥିମାନଙ୍କର ଅସ୍ତିତ୍ୱର ବିଲୋପ ସାଧନା ତେଣୁ ଶ୍ରମିକ ସଂଗଠନର ବିକାଶ ସାଧନ ସଙ୍ଗେ ସଙ୍ଗେ ମଧ୍ୟସ୍ଥିମାନେ ଚେଷ୍ଟାକଲେ ଯେ ଶ୍ରମିକମାନେ ପୂର୍ବ ଅବସ୍ଥାରେ ରହନ୍ତୁ ଓ ସେମାନଙ୍କ ସଂଗଠନ ବୃଦ୍ଧି ନପାଉ ।

ଯଦି କୌଣସି କାରଣରୁ ସେତେବେଳେ ଶ୍ରମିକମାନଙ୍କର ଧର୍ମଘଟ ହେଉଥିଲା,ତେବେ ଏହି ମଧ୍ୟସ୍ଥିମାନେ କିପରି ସେମାନଙ୍କର ଧର୍ମଘଟ ବିଫଳ ହେବ, ସେଥିପାଇଁ ବିଶେଷ ପ୍ରଯତ୍ନ କରୁଥିଲେ । ପୁଣି ସେହି କାର୍ଯ୍ୟ ପାଇଁ ଏହି ମଧ୍ୟସ୍ଥିମାନଙ୍କୁ, ମାଲିକମାନେ ଟଙ୍କା ଓ ଉତ୍ସାହ ପ୍ରଦାନ କରୁଥିଲେ । ତେଣୁ ମଧ୍ୟସ୍ଥିମାନଙ୍କର ନିରନ୍ତର ବିରୋଧ ଫଳରେ ଶ୍ରମିକ ସଂଗଠନର ଆନ୍ଦୋଳନ ବିକାଶରେ ବିଶେଷ ବାଧା ସୃଷ୍ଟିହେଲା ।

୨) ମାଲିକମାନଙ୍କର ଅସହଯୋଗୀ ଦୃଷ୍ଟିକୋଣ– (Non-Co-operation attitude of the Employers) କେତେକ ଶ୍ରମ ବିଶେଷଜ୍ଞ ମତଦାନ କରନ୍ତି ଯେ, ପୂର୍ବେ ମାଲିକମାନେ ସଦାସର୍ବଦା ଶ୍ରମିକମାନଙ୍କୁ ଶୋଷଣ କରୁଥିଲେ । କିନ୍ତୁ ଆଧୁନିକ ଶ୍ରମିକ ଜାଗରଣ ଫଳରେ ମାଲିକମାନଙ୍କର ଏହି ଶୋଷଣ ପ୍ରବୃତ୍ତିର ବିଶେଷ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ବର୍ତ୍ତମାନର ମାଲିକମାନେ ଶ୍ରମିକମାନଙ୍କଠାରୁ ଅଧିକରୁ ଅଧିକ କାମନେଇ ସେମାନଙ୍କୁ କେବଳ ମଜୁରୀ ଦେବା ଛଡ଼ା, ଅନ୍ୟ କେତେକ ସୁବିଧା ଦେବାରେ ବିଶେଷ ପ୍ରଯତ୍ନ କରିଛନ୍ତି ଓ କରୁଛନ୍ତି ।

ପୁଣି ମାଲିକମାନେ ସବୁବେଳେ ସଚେତନ ଯେ, ଶ୍ରମିକମାନଙ୍କର କୌଣସି ସମୂହ ସଂଗଠନ ଶକ୍ତି ନରହୁ ଏବଂ ଏହି ସଂଗଠନ ଶକ୍ତି ଦ୍ୱାରା ସେମାନଙ୍କୁ ଯେପରି ଶ୍ରମିକମାନଙ୍କର ସର୍ତ୍ତ ମାନିନେବାକୁ ନପଡ଼ୁ । ପୂର୍ବେ ଯେତେବେଳେ ଶୋଷଣ ଓ ଅସନ୍ତୋଷ ସୀମା ଲଂଘନ କରୁଥିଲା, ସେତେବେଳେ ଶ୍ରମିକମାନଙ୍କ ମଧ୍ୟରେ ବିରୋଧ ପ୍ରବୃତ୍ତିକୁ ଜାଗ୍ରତ କରାଇ ସଂଗ୍ରାମୀ ମନୋଭାବ ସୃଷ୍ଟି କରିବା ସ୍ୱାଭାବିକ ହୋଇ ପଡୁଥିଲା । କିନ୍ତୁ ସେତେବେଳେ ଶ୍ରମିକମାନଙ୍କର ଏତେ ଶକ୍ତି ଓ ସାମର୍ଥ୍ୟ ନଥିଲା ଯେ ସେମାନେ ସଂଗଠିତ ଅବସ୍ଥାରେ ସଂଗ୍ରାମୀ ମନୋଭାବକୁ ଦୂରକୁ ଆଗେଇ ନେବେ ।

ଏହି ସମୟରେ ମଧ୍ୟ ଶ୍ରମିକମାନଙ୍କୁ ସୁଶୃଂଖଳିତ ଓ ସଂଗଠିତ କରିବାର ପ୍ରଯତ୍ନ କରାଯାଇଥିଲା । ଏହାପରେ ରାଜନୈତିକ ନେତାମାନେ ଶ୍ରମିକ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କଲେ । ଯେତେବେଳେ ହରତାଳ ଫଳରେ ଶିଳ୍ପଉତ୍ପାଦନରେ ବିଶେଷ ବାଧା ଉପୁଜିଲା, ସେତେବେଳେ ମିଲ୍ ମାଲିକମାନଙ୍କ ମନରେ ଚେତନା ଆସିଲା ଏବଂ ସେମାନେ ସେତେବେଳେ ଶ୍ରମିକ ସଂଗଠନ ତଥା ଶ୍ରମିକମାନଙ୍କୁ ପ୍ରତିରୋଧମୂଳକ ଉତ୍ପୀଡ଼ନ (Victimization) କରିବାକୁ ଲାଗିଲେ । ଶ୍ରମିକମାନଙ୍କୁ ପ୍ରତିଶୋଧମୂଳକ ଉତ୍ପୀଡ଼ନ କରିବାକୁ ଯାଇ ସେତେବେଳେ ମାଲିକମାନେ ସେମାନଙ୍କୁ ପଦଚ୍ୟୁତ କରୁଥିଲେ, ସେମାନଙ୍କ ନାମକୁ (Black list)ରେ ରଖୁଥିଲେ ଓ ସେମାନଙ୍କ କାମରେ ବଦନାମ ଆଣୁଥିଲେ ଇତ୍ୟାଦି, ଇତ୍ୟାଦି ।

ଏହିପରି ଭାବରେ ସେତେବେଳେ ମାଲିକମାନେ ଶ୍ରମିକମାନଙ୍କ ପ୍ରତି କିପରି ପ୍ରତିଶୋଧମୂଳକ ଉତ୍ପୀଡ଼ନ କରୁଥିଲେ, ତାହାର ଅସଂଖ୍ୟ ଉଦାହରଣ ପ୍ରଦାନ କରାଯାଇପାରେ । ଏହା ଛଡ଼ା ସେତେବେଳେ ମଧ୍ୟ ମାଲିକ ନିଜ ପରିଚାଳିତ ଓ ନିଜ ନେତୃତ୍ୱରେ ଶ୍ରମିକ ସଂଗଠନମାନ ସୃଷ୍ଟି କରାଇ ଶ୍ରମିକ ସଂଗଠନରେ ବିଭେଦ ଆଣୁଥିଲେ । କେବଳ ଏତିକି ନୁହେଁ, ମାଲିକମାନେ ନିଜ ଲୋକଙ୍କୁ ମଧ୍ୟ ସେତେବେଳେ ଶ୍ରମିକ ସଂଗଠନରେ ଭର୍ତ୍ତିକରାଇ ତାଙ୍କରି ଦ୍ୱାରା ଶ୍ରମିକ ସଂଗଠନକୁ ଭିନ୍ନ ଭିନ୍ନ କରିବାରେ ପ୍ରଯତ୍ନ କରାଉଥିଲେ । ଯଦି ଏସବୁ ପ୍ରଚେଷ୍ଟା ସତ୍ତ୍ୱେ ମାଲିକମାନଙ୍କର ଆଶା ମେଣ୍ଟୁ ନଥିଲା, ତାହାହେଲେ ସେମାନେ ବିଭିନ୍ନ ଉପାୟରେ ଶ୍ରମିକମାନଙ୍କର ନେତାଙ୍କୁ ଓ ଶ୍ରମିକଙ୍କୁ ବାରମ୍ବାର ଅପମାନିତ କରୁଥିଲେ । ପୁଣି ମାଲିକମାନେ କହିବୋଲି ପାଉଥିବା ଶ୍ରମିକମାନଙ୍କୁ ଅତିରିକ୍ତ ସୁବିଧାମାନ ପ୍ରଦାନ କରି, ନିଜର ହାତ ବାରିସୀ କରି ରଖୁଥିଲେ ଏବଂ ସେହିମାନଙ୍କ ଦ୍ୱାରା ଶ୍ରମିକ ସଂଘର ଆନ୍ଦୋଳନକୁ ଭାଙ୍ଗିବାକୁ ଚେଷ୍ଟା କରୁଥିଲେ । ମିଲ୍ ମାଲିକମାନଙ୍କର ଏହିସବୁ ମନୋଭାବ ଯୋଗୁଁ, ଶ୍ରମିକ ଆନ୍ଦୋଳନ ଦ୍ରୁତଗତିରେ ଗଢ଼ି ଉଠି ପାରିଲା ନାହିଁ ।

ଭଗତପୁର,
କଟକ-୯



ଓଡ଼ିଶାର ବିପୁଳ ପ୍ରାକୃତିକ ସଂପଦ, ଯଥା—ଜଳ, ଜଙ୍ଗଲ, ଖଣି, ମୃତ୍ତିକା, ସମୁଦ୍ର ଆଦିର ଉପଯୋଗ ସଙ୍ଗେ ସଙ୍ଗେ ଓଡ଼ିଶାର ପରିଶ୍ରମୀ ଓ ବୁଦ୍ଧିମାନ ଲୋକଶକ୍ତିର ସଦୁପଯୋଗ ପାଇଁ ଏକ ବ୍ୟାପକ ଉଦ୍ୟମ ଆରମ୍ଭ ହୋଇଛି

# ଶ୍ରମହିଁ ସୌଭାଗ୍ୟର ପ୍ରସୂତୀ

ଜେନାମଣି ଲକ୍ଷ୍ମୀକାନ୍ତ

ଜାଏ ନଜାଣେ ଶ୍ରମହିଁ ସମୃଦ୍ଧିର ପ୍ରସୂତୀ । ରାଷ୍ଟ୍ର ଗଠନ ପଥରେ ଭାରତ ଭଳି ଏକ ବିକାଶୋନ୍ମୁଖୀ ଅର୍ଥନୀତିରେ ସବୁଠୁ ବଡ଼ ଶତ୍ରୁ ଯେ ଜନ ସଂଖ୍ୟା ବୃଦ୍ଧି ଓ ଆନୁପାତିକ ଉତ୍ପାଦନ ବୃଦ୍ଧିରେ ସ୍ଥବିରତା ଏହା ଅନେ ନିରାଉନ୍ନ ବିଷୟ । ଏହା କେବଳ ପ୍ରଗତୀକୁ ଯେ ବିଘ୍ନିତ କରୁଛି ତାହା ନୁହେଁ, ଦାରିଦ୍ର୍ୟ ଓ ବୈଷମ୍ୟ ବୃଦ୍ଧିର କାରଣରୂପେ ମୁଣ୍ଡ ଟେକି ଉଠୁଛି ମଧ୍ୟ । ଏହି ପରିପ୍ରେକ୍ଷୀରେ ଉତ୍ପାଦନ ବୃଦ୍ଧି ତଥା ଅର୍ଥନୈତିକ ବିକାଶ ପାଇଁ ଶିଳ୍ପ ଶୃଙ୍ଖଳା କିଭଳି ତାତ୍ପର୍ଯ୍ୟପୂର୍ଣ୍ଣ ତାହା ସହଜରେ ଅନୁମେୟ ।

## ଅଧିକନ୍ତୁ ନ ଦୋଷାୟ

କହିବା ବାହୁଲ୍ୟ ମାତ୍ର ଯେ ଅନୁଶାସନ ହିଁ ଅଧିକ ଉତ୍ପାଦନର ଆଧାର । ଶିଳ୍ପ ଅଶାନ୍ତି ବା ବିଶୃଙ୍ଖଳା ଉତ୍ପାଦନ ପ୍ରବାହର ଅନନ୍ୟ ଅନ୍ତରାୟ ରୂପେ ସୁବିଦିତ । ଉତ୍ପାଦନର ଦୁଇ ସହୋଦ୍ୟମୀ ଅଂଶୀଦାରରୂପେ ମାଲିକ ଓ ଶ୍ରମିକ ଶିଳ୍ପ ଶାନ୍ତି ସୌହାର୍ଦ୍ଦ୍ୟ ଓ ଶୃଙ୍ଖଳା ବଜାୟ ରଖିଲେ ଔଦ୍ୟୋଗିକ-ଶାନ୍ତି ସ୍ୱତଃ ଅପ୍ରତିହତ ରହିବ ନିଶ୍ଚୟ । ତା ଛଡ଼ା ଅଧିକ ଉତ୍ପାଦନ ବଢ଼ିଲେ ସବୁ ଖାଉଟିଙ୍କୁ ଆବଶ୍ୟକ ସମୟରେ ଅପେକ୍ଷାକୃତ ସୁଲଭ ମୂଲ୍ୟରେ ଜିନିଷପତ୍ର କିଣିବାକୁ ମିଳିବ । ଏହି ଲବ୍ଧ ଅର୍ଥରୁ ମଜୁରୀ ବୃଦ୍ଧି ହେତୁ ଜୀବନ ଧାରଣର ମାନବୃଦ୍ଧି କିଛିଟା ସମ୍ଭବ ହେବ ମଧ୍ୟ । ଏହା ବ୍ୟତିତ ଆବଶ୍ୟକାନୁଯାୟୀ ଉତ୍ପାଦିତ ଦ୍ରବ୍ୟ ବଜାରକୁ ଆସିଲେ ଦରଦାମ୍ ବୃଦ୍ଧି ଓ ବାରାନ୍ତରରେ ମୁଦ୍ରାସ୍ଫିତି କିୟଦାଂଶରେ ନିୟନ୍ତ୍ରିତ ଯେ ହେବ, ଏଥିରେ ଦ୍ୱିରୁକ୍ତି ନ ଥାଇ ପାରେ । ସର୍ବୋପରି ଶିଳ୍ପ ସଂପ୍ରସାରଣ ଓ ନୂଆ ଶିଳ୍ପ ସ୍ଥାପନ ଓ ନୂଆ ନିଯୁକ୍ତିର ଅବକାଶକୁ ଏହା ପରୋକ୍ଷରେ ସାହାଯ୍ୟ କରିବ ମଧ୍ୟ । ଯେଣୁ ଅଧିକନ୍ତୁ ନଦୋଷାୟ ।

## ଅସ୍ଥିର ବ୍ୟକ୍ତି ସମ୍ପଦ କରିପାରେ ନାହିଁ

ଏ କ୍ଷେତ୍ରରେ କିଛିଟା ପ୍ରଗତିରେ ଆତ୍ମସନ୍ତୋଷ ଲଭକରି ଥମିଯିବା ଦେଶପକ୍ଷରେ ଅହିତକର ହେବ । ଉତ୍ପାଦନ ପ୍ରବାହ ଅପ୍ରତିହତ ଓ ବୃଦ୍ଧିପାଇଁ ଆହୁରି ଅଧିକ ଲୋଡ଼ା ନିଷ୍ଠା ସାହାସ ଓ ଆତ୍ମ ପ୍ରତ୍ୟୟ ସହ କର୍ମଯୋଗ । ଏହି ଉତ୍ପାଦନ ବୃଦ୍ଧିର ୨ଟି ମୁଖ୍ୟ ପନ୍ଥା ହେଉଛି—(୧) କମ୍ ଲଗାଣରେ ନିର୍ଦ୍ଧାରିତ ସମୟ ମଧ୍ୟରେ ଉତ୍ପାଦନ ଦ୍ରବ୍ୟର ସମାହାର ବୃଦ୍ଧି କରିବା (୨) ଆନୁପାତିକ କମ୍ ଲଗାଣ (Input) ବୃଦ୍ଧି ମାଧ୍ୟମରେ ବର୍ଦ୍ଧିତ ହାରରେ ଉତ୍ପାଦନ ସ୍ତର । ଏହା ଫଳରେ ଉତ୍ପାଦନ ମୂଲ୍ୟ ସଞ୍ଚୟ ସମ୍ଭବ ହୁଏ । ଉଦ୍ୟମ ପ୍ରଚେଷ୍ଟା ଓ ସୁସଂହତି ଯୋଜନା ବ୍ୟତିରେକ ଉତ୍ପାଦନ ବୃଦ୍ଧି ସହଜ ଓ ସୁଲଭ ମଧ୍ୟ ନୁହେଁ । ସେଭଳି ଅସ୍ଥିର ବ୍ୟକ୍ତି ସଂପଦ କରିପାରେ ନାହିଁ ।

## ଆଳସ୍ୟ ସମସ୍ତ ବିପର୍ଯ୍ୟୟର ମୂଳ

ଉତ୍ପାଦନ ବୃଦ୍ଧି ପାଇଁ କେତୋଟି ଗୁରୁତ୍ୱପୂର୍ଣ୍ଣ ଦିଗ ସଂପର୍କରେ ଏଠାରେ ଉଲ୍ଲେଖ କରିବା ଉଚିତ୍ ମଣୁଛି । ଯଥା:—

(୧) କମ୍ ଲଗାଣରେ ଅଧିକରୁ ଅଧିକ ଉତ୍ପାଦନ ବୃଦ୍ଧି ପାଇଁ ମାନସିକ ପ୍ରସ୍ତୁତି । ସ୍ୱେଚ୍ଛାକୃତ ସହୋଦ୍ୟମ ଓ ଶିଳ୍ପ ସୌହାର୍ଦ୍ଦ୍ୟକୁ ପ୍ରଥମେ ଉଜ୍ଜୀବିତ କରିବା ଲୋଡ଼ା ।

(୨) ଶ୍ରମିକ ଓ ପରିଚାଳନା କର୍ତ୍ତୃପକ୍ଷଙ୍କର ବୁଝାମଣାନୁଯାୟୀ ନିର୍ଦ୍ଦିଷ୍ଟ ସମୟ ନିରୂପିତ ଲକ୍ଷ୍ୟ ହାସଲ କରିବାରେ, ଶ୍ରମିକ ପରିଚାଳନା କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରିବା ବିଧେୟ ।

(୩) ଶିଳ୍ପ ପ୍ରତିଷ୍ଠାନରେ ଠିକ୍ ସମୟରେ ଶ୍ରମିକ କାମପାଇଁ ପହଞ୍ଚିବା ଉଚିତ୍ ।

(୪) ଯାନ୍ତ୍ରିକ ତଥା ଲୋକଶକ୍ତିର ଅନୁକୂଳତମ ବିନିଯୋଗ ଏବଂ ଅପଚୟ ଅପସାରଣ ସମେତ ଉତ୍ପାଦନ, ଉତ୍ପାଦିକା ଶକ୍ତି ତଥା କାର୍ଯ୍ୟଦକ୍ଷତାରେ ଉନ୍ନତିବିଧାନ ଦିଗରେ ପ୍ରୟାସୀ ହେବା ସ୍ପୃହଣୀୟ ।

(୫) ଠିକ ଭାବେ କାମ କରିବା, ଯାହାଫଳରେ ଉତ୍ପାଦନ ଓ ଉତ୍ପାଦିକାର ସଫଳ ସମନ୍ୱୟ ସମ୍ଭବ ଓ ସୁଲଭ୍ୟ ହେବ ।

(୬) କମ ଉତ୍ପାଦନ ହେଉଥିବା ଅଞ୍ଚଳମାନଙ୍କୁ ଚିହ୍ନଟ କରିବା ଓ ତାର ଅପସାରଣ ଦିଗରେ ଶ୍ରମିକ ପରିଚାଳନା କର୍ତ୍ତୃପକ୍ଷକୁ ବିଶ୍ୱସ୍ତତାର ସହ ସାହାଯ୍ୟ କରିବା ବାଞ୍ଛନୀୟ ।

(୭) ଶ୍ରମିକ ଅନୁପସ୍ଥିତି ଅବସାନ ପାଇଁ ଶ୍ରମିକ ପ୍ରଚେଷ୍ଟ ହେବା ଲୋଡ଼ା ।

(୮) ଶିଳ୍ପାୟତନରେ ସାଧାରଣ ଶୃଙ୍ଖଳା ରକ୍ଷା କରିବା ଏବଂ ମନ୍ଥର ଗତିରେ କାମ କରିବା, ଧର୍ମଘଟ, ଘେରାଓ, ଓ ବିକ୍ଷୋଭ ପ୍ରଦର୍ଶନ, ଅପପ୍ରଚାର ଆଦିରୁ ଶ୍ରମିକ ଯଥାସାଧ୍ୟ ନିବୃତ୍ତ ରହିବା ଦରକାର ।

(୯) ଦାୟିତ୍ୱବାନ୍ ନାଗରିକରୂପେ ଗୋଷ୍ଠୀସ୍ୱାର୍ଥ ଓ ସ୍ୱଳ୍ପହିତକାରୀ ଶିଳ୍ପର ସ୍ଥିତି ପ୍ରତି ସଚେତ ରହି ଶ୍ରମିକ ଶାନ୍ତି-ପୂର୍ଣ୍ଣ ପ୍ରକାରେ ସକଳ ସମସ୍ୟା ଓ ମତାନୈକ୍ୟ ସମାଧାନରେ ସଚେଷ୍ଟ ହେବା ସର୍ବାଦୌକରଣୀୟ ।

(୧୦) ଶ୍ରମିକ ଦଳିଆ ମନୋଭାବ ପରିହାର ପୂର୍ବକ ଦ୍ୱନ୍ଦ୍ୱ ଓ ମତାନୈକ୍ୟର ନିଷ୍ପତ୍ତି ଆପୋଷ ଆଲୋଚନା ଭିତରେ ଏବଂ ଆଇନାନୁମୋଦିତ ଗଣତାନ୍ତ୍ରିକ କଳ ସାହାଯ୍ୟରେ ସମାଧାନରେ ସତତ ପ୍ରୟାସୀ ହେବା ଉଚିତ ।

(୧୧) ଶିଳ୍ପ ପ୍ରତିଷ୍ଠାନରେ ଗୋଟିଏ କାର୍ଯ୍ୟନିର୍ଘଣ୍ଟ ଶ୍ରମ ଦିବସକୁ ନଷ୍ଟ ହେବାକୁ ନଦେବାରେ ଶ୍ରମିକ ବ୍ରତୀ ହେବା ସ୍ପୃହଣୀୟ ।

(୧୨) ନିଜ ନିଜ ମଧ୍ୟରେ ଉତ୍ତମ ଦାୟିତ୍ୱଭାବ ଓ କର୍ତ୍ତବ୍ୟ ପରାୟଣତା ଶ୍ରମିକ ଉଦ୍ଦୀପିତ କରି ରଖିବାରେ ପ୍ରୟାସୀ ହେବ ସମୁଚିତ ।

(୧୩) କର୍ତ୍ତବ୍ୟ ସଂପାଦନରେ ଶ୍ରମିକ ଅନୁରାଗୀ ଓ ଯତ୍ନବାନ ହେବା ସଙ୍ଗେ ସଙ୍ଗେ ଏକ ଗଣତାନ୍ତ୍ରିକ ସମାଜର ସଦସ୍ୟରୂପେ ଆଇନ ବା ସଂବିଧି ପ୍ରତି ସମ୍ମାନ ପ୍ରଦାନ କରିବା ବିଧେୟ । ଶିଳ୍ପ ଓ ଖାଉଟିଙ୍କର ସ୍ୱାର୍ଥ ସଂରକ୍ଷଣରେ ସାଧୁତା ଓ ନୈତିକତାର ସହ ବ୍ରତୀ ହେବା ବିଧେୟ ।

## ଏକା ହାତରେ ତାଳି ବାଜେନାହିଁ

ଏଠାରେ ଭୁଲିଯିବା ଅନୁଚିତ ଯେ ଉତ୍ପାଦନ ବୃଦ୍ଧି ଅର୍ଥ କେବଳ ଦୈହିକ ଶ୍ରମ ନିଷ୍କାସନ (Extraction) ନୁହେଁ । ଅଥବା 'ପୁଞ୍ଜିର ମୁନାଫାଖୋର ପ୍ରବୃତ୍ତିର ଚରିତାର୍ଥ ପାଇଁ କୌଶଳ ପ୍ରଦ ସହଜ ଉପାୟ ମଧ୍ୟ ନୁହେଁ ।

(୧) ଉତ୍ପାଦନ ବୃଦ୍ଧି କାର୍ଯ୍ୟକ୍ରମର ବହୁ ପୂର୍ବରୁ ପରିଚାଳନା କର୍ତ୍ତୃପକ୍ଷ ବିସ୍ତୃତ ଆଲୋଚନା ମାଧ୍ୟମରେ ଶ୍ରମିକଙ୍କର ଦୃଷ୍ଟିଭଙ୍ଗୀର ସମୀକ୍ଷା କରିବା ସ୍ପୃହଣୀୟ ।

(୨) ପରିଚାଳନା କର୍ତ୍ତୃପକ୍ଷ, ଅଧିକ ଉତ୍ପାଦନ ପାଇଁ କାର୍ଯ୍ୟକ୍ରମରେ ଶ୍ରମିକର ସମର୍ଥନ ସ୍ୱେଚ୍ଛାକୃତ ସହୋଦ୍ୟମ, କାର୍ଯ୍ୟପଦ୍ଧତିରେ ସ୍ୱୀକୃତ ପରିବର୍ତ୍ତନ, କାର୍ଯ୍ୟ ପରିତୃପ୍ତି ଆଦି ବିବିଧ ଦିଗ ସୁସ୍ପଷ୍ଟରୂପେ ବିଶ୍ଳେଷଣ ଦ୍ୱାରା ଏ ଦିଗରେ ଆଗେଇବା ଉଚିତ ।

(୩) ଏଥିପାଇଁ କାର୍ଯ୍ୟ ପ୍ରଣାଳୀ ପ୍ରସ୍ତୁତି, ପ୍ରଶାନ୍ତି ଏବଂ ଉତ୍ପାଦନର ଲକ୍ଷ୍ୟ ହାସଲ, ସମୁଚିତ ଶିଳ୍ପ ସଂଗଠନ, ଅମୀମାଂସିତ ପ୍ରସଙ୍ଗର ସମାଧାନ, ଶ୍ରମିକମାନଙ୍କ କାର୍ଯ୍ୟ କୌଶଳରେ ବିକାଶ, ଶ୍ରମ କଲ୍ୟାଣାଦି ଦିଗରେ ପରିଚାଳନା କର୍ତ୍ତୃପକ୍ଷ ସଚେତ ଓ ସଚେଷ୍ଟ ହେବା ବିଧେୟ ।

(୪) ଅଧିକ ଉତ୍ପାଦନଜନିତ ଲାଭାଂଶରୁ ଶ୍ରମିକଙ୍କୁ ପ୍ରୋତ୍ସାହନ ନିମିତ୍ତ ଆର୍ଥିକ ପାରିତୋଷିକ ପ୍ରଦାନରେ ପରିଚାଳନା କର୍ତ୍ତୃପକ୍ଷ କୃପଣ ହେବା ଅନୁଚିତ ।

(୫) ଶ୍ରମିକମାନଙ୍କର ସ୍ୱାଧୀନତାରେ ଅବାଞ୍ଛିତ ହସ୍ତକ୍ଷେପ ବା ଅସାଧୁ ଶ୍ରମାଭ୍ୟାସରୁ ପରିଚାଳନା କର୍ତ୍ତୃପକ୍ଷ ବିରତ ରହିବା ସଙ୍ଗେ ସଙ୍ଗେ ଅଭିଯୋଗର ସମାଧାନ, ଚୁକ୍ତିନାମା ଓ ଗୃହୀତ ସିଦ୍ଧାନ୍ତରେ ଆଶୁ କାର୍ଯ୍ୟକାରିତା ତଥା ଶ୍ରମିକର ମାନବୀୟ ମର୍ଯ୍ୟାଦା, କଲ୍ୟାଣ ପ୍ରତି ସଚେତନ ରହି ଉତ୍ପାଦନ ପ୍ରଣାଳୀରେ ଏକ ସହୋଦ୍ୟମୀ ଓ ଅନ୍ତରଙ୍ଗ ଅଂଶୀଦାର-ରୂପେ ଶ୍ରମିକର ସହଯୋଗ, ସହମତ ସାହାଚର୍ଯ୍ୟ ଓ ସାହାଯ୍ୟ ନେବାରେ ପରିଚାଳନା କର୍ତ୍ତୃପକ୍ଷ ପ୍ରୟାସୀ ହେବା ସର୍ବାଦୌ କରଣୀୟ ।

## ଇଚ୍ଛା ଥିଲେ ଉପାୟ ଆସେ

ପରିଶେଷରେ କହିବା ନିରର୍ଥକ ଯେ ଅର୍ଥନୈତିକ ପୁନରୁଦ୍ଧାର ଦିଗରେ ଶିଳ୍ପର ଦୁଇ ଅଂଶୀଦାରରୂପେ ଶ୍ରମିକ ଓ ମାଲିକଙ୍କର ଉତ୍ପାଦନ ବୃଦ୍ଧି ପାଇଁ ଏକ ଗୁରୁ ଦାୟିତ୍ୱ ରହିଛି । ପରସ୍ପର ନାଲିସ ଓ ଅଭିଯୋଗ ପରିବର୍ତ୍ତେ ସାଲିସ ଓ ମିଳାମିଶା ମାଧ୍ୟମରେ ଶିଳ୍ପ ସୌହାର୍ଦ୍ଦ୍ୟକୁ ଉଜ୍ଜୀବିତ କରି ରଖିବା ସର୍ବାଦୌକରଣୀୟ. ଯେଣୁ ଶିଳ୍ପ ଶାନ୍ତି ଓ ସୌହାର୍ଦ୍ଦ୍ୟ ବିନା ଉତ୍ପାଦନ ପ୍ରବାହ ଓ ହାର ବୃଦ୍ଧି ଏକ ଦୁରୂହ ବ୍ୟାପାର । ଏଠାରେ ଭୁଲିଯିବା ଅନୁଚିତ ଯେ ଦେଶ ଏକ କଷ୍ଟକର ଦଶନ୍ଧି ମଧ୍ୟରେ ଗତି କରୁଛି ଏବଂ ସୁଶୃଙ୍ଖଳ ଉନ୍ନୟନ ତଥା ଉତ୍ପାଦନ ବୃଦ୍ଧିର ଆହ୍ୱାନକୁ ମୁକାବିଲା ପାଇଁ ଆମକୁ ସମଗ୍ର ପୃଥିବୀର ପରିବର୍ତ୍ତନ ବେଗ ସହିତ ପାଦ ମିଳାଇ ଚାଲିବାକୁ ପଡ଼ିବ । ଯଦିଓ ଶିଳ୍ପ ଉଦ୍ୟୋଗ କ୍ଷେତ୍ରରେ ଅଭିବୃଦ୍ଧି ଓ ଅଧିକତର ଆତ୍ମ ନିର୍ଭରଶୀଳତା ଦିଗରେ ଦୃଢ଼ ଭିତ୍ତି ସ୍ଥାପିତ ହୋଇଛି, ତଥାପି ପୂର୍ଣ୍ଣ ଆତ୍ମନିର୍ଭରଶୀଳତା ହାସଲ ପାଇଁ ଅଧିକ ଉତ୍ପାଦନ ଆମର କାର୍ଯ୍ୟ । ଭାରତୀୟ ଅର୍ଥନୀତିକୁ ବର୍ତ୍ତମାନର ମାନ୍ଦା ଅବସ୍ଥାରୁ ମୁକ୍ତ କରାଇବା ପାଇଁ ଅର୍ଥନୀତିର ପ୍ରତ୍ୟେକ କ୍ଷେତ୍ରରେ ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ବଢ଼ି ବର୍ତ୍ତମାନ ଏକାନ୍ତ ଆବଶ୍ୟକ, ଏହାହିଁ ଅର୍ଥନୈତିକ ପୁନରୁଦ୍ଧାର ପାଇଁ ସମୟର ଆହ୍ୱାନ ଶିଳ୍ପର ଦୁଇ ଅଂଶୀଦାର ଶ୍ରମିକ ଓ ମାଲିକଙ୍କ ପ୍ରତି । ଯେଣୁ ଅଧିକ ଉତ୍ପାଦନକ୍ଷମ ଶ୍ରମହିଁ ସୌଭାଗ୍ୟ ଓ ସମୃଦ୍ଧିର ପ୍ରସୂତୀ ।

# ଶ୍ରମହିଁ ସୌଭାଗ୍ୟର ପ୍ରସୂତୀ

ଜେନାମଣି ଲକ୍ଷ୍ମୀକାନ୍ତ

କିଏ ନଜାଣେ ଶ୍ରମହିଁ ସମୃଦ୍ଧିର ପ୍ରସୂତୀ । ରାଷ୍ଟ୍ର ଗଠନ ପଥରେ ଭାରତ ଭଳି ଏକ ବିକାଶୋନ୍ମୁଖୀ ଅର୍ଥନୀତିରେ ସବୁଠୁ ବଡ଼ ଶତ୍ରୁ ଯେ ଜନ ସଂଖ୍ୟା ବୃଦ୍ଧି ଓ ଆନୁପାତିକ ଉତ୍ପାଦନ ବୃଦ୍ଧିରେ ଅବିରତା ଏହା ଅନେ ନିରାଉଲ ବିଷୟ । ଏହା କେବଳ ପ୍ରଗତୀକୁ ଯେ ବିଘ୍ନିତ କରୁଛି ତାହା ନୁହେଁ, ଦାରିଦ୍ର୍ୟ ଓ ବୈଷମ୍ୟ ବୃଦ୍ଧିର କାରଣରୂପେ ମୁଣ୍ଡ ଟେକି ଉଠୁଛି ମଧ୍ୟ । ଏହି ପରିପ୍ରେକ୍ଷୀରେ ଉତ୍ପାଦନ ବୃଦ୍ଧି ତଥା ଅର୍ଥନୈତିକ ବିକାଶ ପାଇଁ ଶିଳ୍ପ ଶୃଙ୍ଖଳା କିଭଳି ତାତ୍ପର୍ଯ୍ୟପୂର୍ଣ୍ଣ ତାହା ସହଜରେ ଅନୁମେୟ ।

## ଅଧିକନ୍ତୁ ନ ଦୋଷାୟ

କହିବା ବାହୁଲ୍ୟ ମାତ୍ର ଯେ ଅନୁଶାସନ ହିଁ ଅଧିକ ଉତ୍ପାଦନର ଆଧାର । ଶିଳ୍ପ ଅଶାନ୍ତି ବା ବିଶୃଙ୍ଖଳା ଉତ୍ପାଦନ ପ୍ରବାହର ଅନନ୍ୟ ଅନ୍ତରାୟ ରୂପେ ସୁବିଦିତ । ଉତ୍ପାଦନର ଦୁଇ ସହୋଦ୍ୟମୀ ଅଂଶୀଦାରରୂପେ ମାଲିକ ଓ ଶ୍ରମିକ ଶିଳ୍ପ ଶାନ୍ତି ସୌହାର୍ଦ୍ଦ୍ୟ ଓ ଶୃଙ୍ଖଳା ବଜାୟ ରଖିଲେ ଔଦ୍ୟୋଗିକ-ଶାନ୍ତି ସ୍ୱତଃ ଅପ୍ରତିହତ ରହିବ ନିଶ୍ଚୟ । ତା ଛଡ଼ା ଅଧିକ ଉତ୍ପାଦନ ବଢ଼ିଲେ ସବୁ ଖାଉଟିଙ୍କୁ ଆବଶ୍ୟକ ସମୟରେ ଅପେକ୍ଷାକୃତ ସୁଲଭ ମୂଲ୍ୟରେ ଜିନିଷପତ୍ର କିଣିବାକୁ ମିଳିବ । ଏହି ଲବ୍ଧ ଅର୍ଥରୁ ମଜୁରୀ ବୃଦ୍ଧି ହେତୁ ଜୀବନ ଧାରଣର ମାନବୃଦ୍ଧି କିଛିଟା ସମ୍ଭବ ହେବ ମଧ୍ୟ । ଏହା ବ୍ୟତିତ ଆବଶ୍ୟକାନୁଯାୟୀ ଉତ୍ପାଦିତ ଦ୍ରବ୍ୟ ବଜାରକୁ ଆସିଲେ ଦରଦାମ୍ ବୃଦ୍ଧି ଓ ବାରାନ୍ତରରେ ମୁଦ୍ରାସ୍ଫୀତି କିୟଦାଂଶରେ ନିୟନ୍ତ୍ରିତ ଯେ ହେବ, ଏଥିରେ ଦ୍ୱିରୁକ୍ତି ନ ଥାଇ ପାରେ । ସର୍ବୋପରି ଶିଳ୍ପ ସଂପ୍ରସାରଣ ଓ ନୂଆ ଶିଳ୍ପ ସ୍ଥାପନ ଓ ନୂଆ ନିଯୁକ୍ତିର ଅବକାଶକୁ ଏହା ପରୋକ୍ଷରେ ସାହାଯ୍ୟ କରିବ ମଧ୍ୟ । ଯେଣୁ ଅଧିକନ୍ତୁ ନଦୋଷାୟ ।

## ଅସ୍ଥିର ବ୍ୟକ୍ତି ସମ୍ପଦ କରିପାରେ ନାହିଁ

ଏ କ୍ଷେତ୍ରରେ କିଛିଟା ପ୍ରଗତିରେ ଆତ୍ମସନ୍ତୋଷ ଲାଭକରି ଥମିଯିବା ଦେଶପକ୍ଷରେ ଅହିତକର ହେବ । ଉତ୍ପାଦନ ପ୍ରବାହ ଅପ୍ରତିହତ ଓ ବୃଦ୍ଧିପାଇଁ ଆହୁରି ଅଧିକ ଯେତ୍ନା ନିଷ୍ଠା ସାହାସ ଓ ଆତ୍ମ ପ୍ରତ୍ୟୟ ସହ କର୍ମଯୋଗ । ଏହି ଉତ୍ପାଦନ ବୃଦ୍ଧିର ୨ଟି ମୁଖ୍ୟ ପନ୍ଥା ହେଉଛି—(୧) କମ୍ ଲଗାଣରେ ନିର୍ଦ୍ଧାରିତ ସମୟ ମଧ୍ୟରେ ଉତ୍ପାଦନ ଦ୍ରବ୍ୟର ସମାହାର ବୃଦ୍ଧି ନତୁବା (୨) ଆନୁପାତିକ କମ୍ ଲଗାଣ (Input) ବୃଦ୍ଧି ମାଧ୍ୟମରେ ବର୍ଦ୍ଧିତ ହାରରେ ଉତ୍ପାଦନ ସ୍ତର । ଏହା ଫଳରେ ଉତ୍ପାଦନ ମୂଲ୍ୟ ସଞ୍ଚୟ ସମ୍ଭବ ହୁଏ । ଉଦ୍ୟମ ପ୍ରଚେଷ୍ଟା ଓ ସୁସଂହତି ଯୋଜନା ବ୍ୟତିରେକେ ଉତ୍ପାଦନ ବୃଦ୍ଧି ସହଜ ଓ ସୁଲଭ ମଧ୍ୟ ନୁହେଁ । ଯେଉଁଭଳି ଅସ୍ଥିର ବ୍ୟକ୍ତି ସଂପଦ କରିପାରେ ନାହିଁ ।

## ଆଳସ୍ୟ ସମସ୍ତ ବିପର୍ଯ୍ୟୟର ମୂଳ

ଉତ୍ପାଦନ ବୃଦ୍ଧି ପାଇଁ କେତୋଟି ଗୁରୁତ୍ୱପୂର୍ଣ୍ଣ ଦିଗ ସଂପର୍କରେ ଏଠାରେ ଉଲ୍ଲେଖ କରିବା ଉଚିତ୍ ମଣୁଛି । ଯଥା:—

(୧) କମ୍ ଲଗାଣରେ ଅଧିକରୁ ଅଧିକ ଉତ୍ପାଦନ ବୃଦ୍ଧି ପାଇଁ ମାନସିକ ପ୍ରସ୍ତୁତି । ସ୍ୱେଚ୍ଛାକୃତ ସହୋଦ୍ୟମ ଓ ଶିଳ୍ପ ସୌହାର୍ଦ୍ଦ୍ୟକୁ ପ୍ରଥମେ ଉଜ୍ଜୀବିତ କରିବା ଲୋଡ଼ା ।

(୨) ଶ୍ରମିକ ଓ ପରିଚାଳନା କର୍ତ୍ତୃପକ୍ଷଙ୍କର ବୁଝାମଣାନୁଯାୟୀ ନିର୍ଦ୍ଦିଷ୍ଟ ସମୟ ନିରୂପିତ ଲକ୍ଷ୍ୟ ହାସଲ କରିବାରେ ଶ୍ରମିକ ପରିଚାଳନା କର୍ତ୍ତୃପକ୍ଷକୁ ସାହାଯ୍ୟ କରିବା ବିଧେୟ ।

(୩) ଶିଳ୍ପ ପ୍ରତିଷ୍ଠାନରେ ଠିକ୍ ସମୟରେ ଶ୍ରମିକ କାମପାଇଁ ପହଞ୍ଚିବା ଉଚିତ୍ ।

(୪) ଯାନ୍ତ୍ରିକ ତଥା ଲୋକଶକ୍ତିର ଅନୁକୂଳତମ ବିନିଯୋଗ ଏବଂ ଅପଚୟ ଅପସାରଣ ସମେତ ଉତ୍ପାଦନ, ଉତ୍ପାଦିକା ଶକ୍ତି ତଥା କାର୍ଯ୍ୟଦକ୍ଷତାରେ ଉନ୍ନତିବିଧାନ ଦିଗରେ ପ୍ରୟାସୀ ହେବା ସ୍ପୃହଣୀୟ ।

(୫) ଠିକ ଭାବେ କାମ କରିବା, ଯାହାଫଳରେ ଉତ୍ପାଦନ ଓ ଉତ୍ପାଦିକାର ସଫଳ ସମନ୍ୱୟ ସମ୍ଭବ ଓ ସୁଲଭ୍ୟ ହେବ ।

(୬) କମ ଉତ୍ପାଦନ ହେଉଥିବା ଅଞ୍ଚଳମାନଙ୍କୁ ଚିହ୍ନଟ କରିବା ଓ ତାର ଅପସାରଣ ଦିଗରେ ଶ୍ରମିକ ପରିଚାଳନା କର୍ତ୍ତୃପକ୍ଷଙ୍କୁ ବିଶ୍ୱସ୍ତତାର ସହ ସାହାଯ୍ୟ କରିବା ବାଞ୍ଛନୀୟ ।

(୭) ଶ୍ରମିକ ଅନୁପସ୍ଥିତି ଅବସାନ ପାଇଁ ଶ୍ରମିକ ପ୍ରଚେଷ୍ଟିତ ହେବା ଲୋଡ଼ା ।

(୮) ଶିଳ୍ପାୟତନରେ ସାଧାରଣ ଶୃଙ୍ଖଳା ରକ୍ଷା କରିବା ଏବଂ ମନ୍ଥର ଗତିରେ କାମ କରିବା, ଧର୍ମଘଟ, ଘେରାଓ, ଓ ବିକ୍ଷୋଭ ପ୍ରଦର୍ଶନ, ଅପପ୍ରଚାର ଆଦିରୁ ଶ୍ରମିକ ଯଥାସାଧ୍ୟ ନିବୃତ୍ତ ରହିବା ଦରକାର ।

(୯) ଦାୟିତ୍ୱବାନ୍ ନାଗରିକରୂପେ ଗୋଷ୍ଠୀସ୍ୱାର୍ଥ ଓ ଲୋକହିତକାରୀ ଶିଳ୍ପର ସ୍ଥିତି ପ୍ରତି ସଚେତ ରହି ଶ୍ରମିକ ଶାନ୍ତିପୂର୍ଣ୍ଣ ପ୍ରଥାରେ ସକଳ ସମସ୍ୟା ଓ ମତାନୈକ୍ୟ ସମାଧାନରେ ସଚେଷ୍ଟ ହେବା ସର୍ବାଦୌକରଣୀୟ ।

(୧୦) ଶ୍ରମିକ ଦଳିଆ ମନୋଭାବ ପରିହାର ପୂର୍ବକ ଦ୍ୱନ୍ଦ୍ୱ ଓ ମତାନୈକ୍ୟର ନିଷ୍ପତ୍ତି ଆପୋଷ ଆଲୋଚନା ଭିତରେ ଏବଂ ଆଇନାନୁମୋଦିତ ଗଣତାନ୍ତ୍ରିକ କଳ ସାହାଯ୍ୟରେ ସମାଧାନରେ ସତତ ପ୍ରୟାସୀ ହେବା ଉଚିତ ।

(୧୧) ଶିଳ୍ପ ପ୍ରତିଷ୍ଠାନରେ ଗୋଟିଏ କାର୍ଯ୍ୟନିର୍ଘଣ୍ଟ ଶ୍ରମ ଦିବସକୁ ନଷ୍ଟ ହେବାକୁ ନଦେବାରେ ଶ୍ରମିକ ବ୍ରତୀ ହେବା ସ୍ପୃହଣୀୟ ।

(୧୨) ନିଜ ନିଜ ମଧ୍ୟରେ ଉତ୍ତମ ଦାୟିତ୍ୱଭାବ ଓ କର୍ତ୍ତବ୍ୟ ପରାୟଣତା ଶ୍ରମିକ ଉଦ୍‌ବୀଦିତ କରି ରଖିବାରେ ପ୍ରୟାସୀ ହେବ ସମୁଚିତ ।

(୧୩) କର୍ତ୍ତବ୍ୟ ସଂପାଦନରେ ଶ୍ରମିକ ଅନୁରାଗୀ ଓ ଯତ୍ନବାନ ହେବା ସଙ୍ଗେ ସଙ୍ଗେ ଏକ ଗଣତାନ୍ତ୍ରିକ ସମାଜର ସଦସ୍ୟରୂପେ ଆଇନ ବା ସଂବିଧି ପ୍ରତି ସମ୍ମାନ ପ୍ରଦାନ କରିବା ବିଧେୟ । ଶିଳ୍ପ ଓ ଖାଉଟିଙ୍କର ସ୍ୱାର୍ଥ ସଂରକ୍ଷଣରେ ସାଧୁତା ଓ ନୈତିକତାର ସହ ବ୍ରତୀ ହେବା ବିଧେୟ ।

## ଏକା ହାତରେ ତାଳି ବାଜେନାହିଁ

ଏଠାରେ ଭୁଲିଯିବା ଅନୁଚିତ ଯେ ଉତ୍ପାଦନ ବୃଦ୍ଧି ଅର୍ଥ କେବଳ ଦୈହିକ ଶ୍ରମ ନିଷ୍କାସନ (Extraction) ନୁହେଁ । କିମ୍ବା 'ପୁଞ୍ଜିର ମୁନାଫାଖୋର ପ୍ରବୃତ୍ତିର ଚରିତାର୍ଥ ପାଇଁ କୌଶଳ ପ୍ରଦ ସହଜ ଉପାୟ ମଧ୍ୟ ନୁହେଁ ।

(୧) ଉତ୍ପାଦନ ବୃଦ୍ଧି କାର୍ଯ୍ୟକ୍ରମର ବହୁ ପୂର୍ବରୁ ପରିଚାଳନା କର୍ତ୍ତୃପକ୍ଷ ବିସ୍ତୃତ ଆଲୋଚନା ମାଧ୍ୟମରେ ଶ୍ରମିକଙ୍କର ଦୃଷ୍ଟିଭଙ୍ଗୀର ସମୀକ୍ଷା କରିବା ସ୍ପୃହଣୀୟ ।

(୨) ପରିଚାଳନା କର୍ତ୍ତୃପକ୍ଷ, ଅଧିକ ଉତ୍ପାଦନ ପାଇଁ କାର୍ଯ୍ୟକ୍ରମରେ ଶ୍ରମିକର ସମର୍ଥନ ସ୍ୱେଚ୍ଛାକୃତ ସହୋଦ୍ୟମ, କାର୍ଯ୍ୟପଦ୍ଧତିରେ ସ୍ୱୀକୃତ ପରିବର୍ତ୍ତନ, କାର୍ଯ୍ୟ ପରିତୃପ୍ତି ଆଦି ବିବିଧ ଦିଗ ସୁସ୍ପଷ୍ଟରୂପେ ବିଶ୍ଳେଷଣ କରାଇ ଏ ଦିଗରେ ଆଗେଇବା ଉଚିତ ।

(୩) ଏଥିପାଇଁ କାର୍ଯ୍ୟ ପ୍ରଣାଳୀ ପ୍ରସ୍ତୁତି, ପ୍ରଣାଳି ଏବଂ ଉତ୍ପାଦନର ଲକ୍ଷ୍ୟ ହାସଲ, ସମୁଚିତ ଶିଳ୍ପ ସଂଗଠନ, ଅମୀମାଂସିତ ପ୍ରସଙ୍ଗର ସମାଧାନ, ଶ୍ରମିକମାନଙ୍କ କାର୍ଯ୍ୟ କୌଶଳରେ ବିକାଶ, ଶ୍ରମ କଲ୍ୟାଣାଦି ଦିଗରେ ପରିଚାଳନା କର୍ତ୍ତୃପକ୍ଷ ସଚେତ ଓ ସଚେଷ୍ଟ ହେବା ବିଧେୟ ।

(୪) ଅଧିକ ଉତ୍ପାଦନଜନିତ ଲାଭାଂଶରୁ ଶ୍ରମିକକୁ ପ୍ରୋତ୍ସାହନ ନିମିତ୍ତ ଆର୍ଥିକ ପାରିତୋଷିକ ପ୍ରଦାନରେ ପରିଚାଳନା କର୍ତ୍ତୃପକ୍ଷ କୃପଣ ହେବା ଅନୁଚିତ ।

(୫) ଶ୍ରମିକମାନଙ୍କର ସ୍ୱାଧୀନତାରେ ଅବାଞ୍ଛିତ ହସ୍ତକ୍ଷେପ ବା ଅସାଧୁ ଶ୍ରମାଭ୍ୟାସରୁ ପରିଚାଳନା କର୍ତ୍ତୃପକ୍ଷ ବିରତ ରହିବା ସଙ୍ଗେ ସଙ୍ଗେ ଅଭିଯୋଗର ସମାଧାନ, ଚୁକ୍ତିନାମା ଓ ଗୃହୀତ ସିଦ୍ଧାନ୍ତରେ ଆଶୁ କାର୍ଯ୍ୟକାରିତା ତଥା ଶ୍ରମିକର ମାନବୀୟ ମର୍ଯ୍ୟାଦା, କଲ୍ୟାଣ ପ୍ରତି ସଚେତନ ରହି ଉତ୍ପାଦନ ପ୍ରଣାଳୀରେ ଏକ ସହୋଦ୍ୟମୀ ଓ ଅନ୍ତରଙ୍ଗ ଅଂଶୀଦାରରୂପେ ଶ୍ରମିକର ସହଯୋଗ, ସହମତ ସାହଚର୍ଯ୍ୟ ଓ ସାହାଯ୍ୟ ନେବାରେ ପରିଚାଳନା କର୍ତ୍ତୃପକ୍ଷ ପ୍ରୟାସୀ ହେବା ସର୍ବାଦୌକରଣୀୟ ।

## ଇଚ୍ଛା ଥିଲେ ଉପାୟ ଆସେ

ପରିଶେଷରେ କହିବା ନିରର୍ଥକ ଯେ ଅର୍ଥନୈତିକ ପୁନରୁଦ୍ଧାର ଦିଗରେ ଶିଳ୍ପର ଦୁଇ ଅଂଶୀଦାରରୂପେ ଶ୍ରମିକ ଓ ମାଲିକଙ୍କର ଉତ୍ପାଦନ ବୃଦ୍ଧି ପାଇଁ ଏକ ଗୁରୁ ଦାୟିତ୍ୱ ରହିଛି । ପରସ୍ପର ନାଲିସ ଓ ଅଭିଯୋଗ ପରିବର୍ତ୍ତେ ସାଲିସ ଓ ମିଳାମିଶା ମାଧ୍ୟମରେ ଶିଳ୍ପ ସୌହାର୍ଦ୍ଦ୍ୟକୁ ଉଦ୍‌ଜୀବିତ କରି ରଖିବା ସର୍ବାଦୌକରଣୀୟ, ଯେଣୁ ଶିଳ୍ପ ଶାନ୍ତି ଓ ସୌହାର୍ଦ୍ଦ୍ୟ ବିନା ଉତ୍ପାଦନ ପ୍ରବାହ ଓ ହାର ବୃଦ୍ଧି ଏକ ଦୁରୂହ ବ୍ୟାପାର । ଏଠାରେ ଭୁଲିଯିବା ଅନୁଚିତ ଯେ ଦେଶ ଏକ କଷ୍ଟକର ଦଶନ୍ଧି ମଧ୍ୟରେ ଗତି କରୁଛି ଏବଂ ସୁଶୃଙ୍ଖଳ ଉନ୍ନୟନ ତଥା ଉତ୍ପାଦନ ବୃଦ୍ଧିର ଆହ୍ୱାନକୁ ମୁକାବିଲା ପାଇଁ ଆମକୁ ସମଗ୍ର ପୃଥିବୀର ପରିବର୍ତ୍ତନ ବେଗ ସହିତ ପାଦ ମିଳାଇ ଚାଲିବାକୁ ପଡ଼ିବ । ଯଦିଓ ଶିଳ୍ପ ଉଦ୍ୟୋଗ କ୍ଷେତ୍ରରେ ଅଭିବୃଦ୍ଧି ଓ ଅଧିକତର ଆତ୍ମ ନିର୍ଭରଶୀଳତା ଦିଗରେ ଦୃଢ଼ ଭିତ୍ତି ସ୍ଥାପିତ ହୋଇଛି, ତଥାପି ପୂର୍ଣ୍ଣ ଆତ୍ମନିର୍ଭରଶୀଳତା ହାସଲ ପାଇଁ ଅଧିକ ଉତ୍ପାଦନ ଆମର କାମ୍ୟ । ଭାରତୀୟ ଅର୍ଥନୀତିକୁ ବର୍ତ୍ତମାନର ମାନ୍ଦା ଅବସ୍ଥାରୁ ମୁକ୍ତ କରାଇବା ପାଇଁ ଅର୍ଥନୀତିର ପ୍ରତ୍ୟେକ କ୍ଷେତ୍ରରେ ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ବଢ଼ି ବର୍ତ୍ତମାନ ଏକାନ୍ତ ଆବଶ୍ୟକ, ଏହାହିଁ ଅର୍ଥନୈତିକ ପୁନରୁଦ୍ଧାର ପାଇଁ ସମୟର ଆହ୍ୱାନ ଶିଳ୍ପର ଦୁଇ ଅଂଶୀଦାର ଶ୍ରମିକ ଓ ମାଲିକଙ୍କ ପ୍ରତି । ଯେଣୁ ଅଧିକ ଉତ୍ପାଦନକ୍ଷମ ଶ୍ରମହିଁ ସୌଭାଗ୍ୟ ଓ ସମୃଦ୍ଧିର ପ୍ରସୂତୀ ।

# ଆପଣଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ

ଗୋଟିଏ କିମ୍ବା ଦୁଇଟି ସନ୍ତାନ ପରେ ଗର୍ଭନିରୋଧ ଅସ୍ତ୍ରୋପଚାର କରାଇଲେ ଆପଣ "ସବୁଜ ପତ୍ରିକା"ର ଅଧିକାରୀ ହୋଇ ପାରିବେ । ତା ୧୯ । ୧୦ । ୧୯୮୩ ରିଖ ଠାରୁ ରାଜ୍ୟରେ ଏହି ଯୋଜନା କାର୍ଯ୍ୟକାରୀ ହୋଇଥିବାରୁ ଏହି ତାରିଖ ପରେ ୧୫ ବର୍ଷ ବୟସଠାରୁ ୪୮ ବର୍ଷ ବୟସ ଭିତରେ ଥିବା ଯେଉଁ ଦମ୍ପତି ଗର୍ଭନିରୋଧ ଅସ୍ତ୍ରୋପଚାର କରାଇଥିବେ ସେମାନଙ୍କୁ ନିମ୍ନଲିଖିତ ସୁବିଧା ସୁଯୋଗ ଦିଆଯିବ :—

୧ । ରାଜ୍ୟ ସରକାର କିମ୍ବା ଗୃହନିର୍ମାଣ ସଂସ୍ଥା ଦ୍ୱାରା ନିର୍ମିତ ଗୃହଗୁଡ଼ିକ ମଧ୍ୟରୁ ଶତକଡ଼ା ୫ଟି ଗୃହ ଏଭଳି ପରିବାରଙ୍କୁ ଯୋଗାଇ ଦିଆଯିବ ।

୨ । ଘରଡିହ ନ ଥିବା ଏଭଳି ପରିବାରଙ୍କୁ ପ୍ରଚଳିତ ୪ ଡେସିମିଲ ପରିବର୍ତ୍ତେ ୮ ଡେସିମିଲ ଭୂମି ବିନାମୂଲ୍ୟରେ ଯୋଗାଇ ଦିଆଯିବ ।

୩ । ନିମ୍ନ ଆୟ ବା ମଧ୍ୟମ ଆୟ ଗୋଷ୍ଠୀର ଲୋକମାନଙ୍କୁ ଦିଆଯାଉଥିବା ଗୃହନିର୍ମାଣ ଋଣରୁ ଶତକଡ଼ା ୫ ଭାଗ ଏ ଧରଣର ପରିବାର ପାଇଁ ସଂରକ୍ଷିତ ରହିବ ।

୪ । ମେଡ଼ିକାଲ, ଇଂଜିନିୟରିଂ, ପଲିଟେକ୍ନିକ୍ ଓ ଆଇ. ଟି. ଆଇ. ପ୍ରଭୃତି ଶିକ୍ଷାନୁଷ୍ଠାନମାନଙ୍କରେ ଶତକଡ଼ା ୫ ଭାଗ ସ୍ଥାନ ଏପରି ପରିବାରର ପିଲାଙ୍କ ପାଇଁ ସଂରକ୍ଷିତ ରହିବ ।

୫ । ଏହି ପରିବାରର ସ୍ୱାମୀ କିମ୍ବା ସ୍ତ୍ରୀ ସରକାରୀ କର୍ମଚାରୀ ହୋଇଥିଲେ, ତାଙ୍କ ଦରମାରେ ଅଗ୍ରିମ ଦୁଇଟି ଇନକ୍ରିମେଣ୍ଟ ପାଇବେ ।

୬ । ସବୁଜ ପତ୍ରିକାଧାରୀଙ୍କ ପାଇଁ ଦଶହଜାର ଟଙ୍କାର ଏକ ବାର୍ଷିକ ଲଟେରୀର ସୁଯୋଗ ଅସ୍ତ୍ରୋପଚାର ହେବାଠାରୁ ପାଞ୍ଚବର୍ଷ ପର୍ଯ୍ୟନ୍ତ ଉନ୍ମୁକ୍ତ ରହିବ ।

ଏ ବିଷୟରେ ଅଧିକ ଜାଣିବାକୁ ଚାହିଁଲେ ନିକଟସ୍ଥ ପରିବାର କଲ୍ୟାଣ କେନ୍ଦ୍ରର ପରାମର୍ଶ ନିଅନ୍ତୁ ।

ପରିବାର କଲ୍ୟାଣ ନିର୍ଦ୍ଦେଶାଳୟ, ଓଡ଼ିଶା

ଭୁବନେଶ୍ୱର

# ଶ୍ରମିକ ଅଶାନ୍ତି

ଡଃ ପ୍ରଫୁଲ୍ଲ ଚନ୍ଦ୍ର ଦାଶ

ଉତ୍ପାଦନରେ ଶ୍ରମିକ ଗୋଟିଏ ମାନବିକ ଉପାଦାନ । ଉତ୍ପାଦନ ପ୍ରକ୍ରିୟାର ଅନ୍ୟାନ୍ୟ ଉପାଦାନ ଯଥା: ଜମି, ପୁଞ୍ଜି ଏବଂ ପରିଚାଳନା ମାନେବତର ଉପାଦାନ ହୋଇଥିବାରୁ ସେଥିରେ ଚଳନ୍ତ ପ୍ରକ୍ରିୟା ଅଛି ସତ ମାତ୍ର ଜୀବନ ନାହିଁ । ଜୀବନଥିବା ଯୋଗୁଁ ଏହାର ସ୍ପନ୍ଦନ, ଚେତନା, ପ୍ରତିକ୍ରିୟା, ଚିନ୍ତା ଏବଂ ବାସନା ରହିଛି । ପୁଣି ମଣିଷ ପଶୁ ନୁହେଁ । ପଶୁ ହୁଏତ କାନ୍ଦିବାର କେହି କେହି କହିଛନ୍ତି, ମାତ୍ର ହସିବାର ଦୃଷ୍ଟାନ୍ତ ନାହିଁ । ଏହି ପରିପ୍ରେକ୍ଷୀରେ ବିଚାର କଲେ ଉତ୍ପାଦନରେ ନିଯୋଗ ହେଉଥିବା ଏହି ମାନବିକ ଉପାଦାନଟି କଳ-କାରଖାନା ତଥା ଶିଳ୍ପରେ କାମ କଲାବେଳେ ମଧ୍ୟ ସେ ଜଣେ ସାଧାରଣ ମଣିଷ; ତା ମନରେ ଆଶା–ନିରାଶା, ଅଭାବ–ସୁଖର, କ୍ରିୟା-ପ୍ରତିକ୍ରିୟା ଆଦି ଜୀବନ ଚେତନା ଜାଗାବାନ୍ଧି ରହିଛି । ଜଣେ ସୁସ୍ଥ ମଣିଷପରି ସେ ମଧ୍ୟ ଚାହୁଁଛି ଉଚିତ କାର୍ଯ୍ୟ ପରିବେଶ, ଭଲ ବ୍ୟବହାର, ଉଚିତ ମଜୁରୀ, ସାମାଜିକ ନିରାପତ୍ତା, ଚିକିତ୍ସା, ଆମୋଦ ପ୍ରମୋଦ ଇତ୍ୟାଦି । ଏ ସବୁ ମିଳିବାର ଅଭାବ ହେଲେ ତା ମନରେ ଗ୍ଲାନି କିମ୍ବା ଅସନ୍ତୋଷ ଉଦ୍ରେକ ହେବା ସ୍ୱାଭାବିକ । ଏହା ପୁଞ୍ଜିଭୂତ ଭାବେ ପ୍ରକାଶ ପାଇଲେ ଧର୍ମଘଟ ହରତାଳ ଆଦି ଅଘଟଣ ଘଟି ଶିଳ୍ପରେ ବିଶୃଙ୍ଖଳା ଦେଖାଦିଏ । ମାତ୍ର ଇଏ ହେଲା ଶ୍ରମିକ ଅଶାନ୍ତିର ଗୋଟିଏ ଦିଗ । ଅନ୍ୟ ଦିଗଟି ହେଲା ଶ୍ରମିକର ଅନ୍ୟ ଅଂଶୀଦାର ମାଲିକ ବା ପରିଚାଳନା କର୍ତ୍ତୃପକ୍ଷ ।

ପରିଚାଳନା କର୍ତ୍ତୃପକ୍ଷ ବା ମାଲିକ ମଧ୍ୟ ଅନେକ ଆଶା ଆକାଂକ୍ଷା ନେଇ ଶିଳ୍ପଟିଏ ପ୍ରତିଷ୍ଠା କରିଛି । ଅନ୍ତତଃ ଜଣେ ପରିଚାଳକ ସୁସ୍ଥ ମନରେ କାରଖାନା ବା ଶିଳ୍ପ ବନ୍ଦ କରିବା ସପକ୍ଷରେ କେବେ ହେଲେ ନ ଥାନ୍ତି । ସେ ଜାଣନ୍ତି ଶିଳ୍ପ-ଟି ତାଙ୍କର ସମ୍ବଳ ଏବଂ ଅବଲମ୍ବନ । ଅନେକ କ୍ଷେତ୍ରରେ ସେ ଚିନ୍ତା କରନ୍ତି, ଆଜି ହୁଏତ ତାଙ୍କ ବ୍ୟବସାୟରେ କୌଣସି କାରଣରୁ ଲାଭ ହେଉନାହିଁ । କାଲିକି ହୁଏତ ହୋଇପାରେ । ସେ ସବୁବେଳେ ଆଶାବାଦୀ, ତଥାପି ଶିଳ୍ପରେ ଯଦି ନିମ୍ନତମ ଉତ୍ପାଦନ ନହୁଏ ଏବଂ ଧାରାବାହିକ ଭାବେ ଶ୍ରମିକମାନେ କାରଖାନାର ବିକାଶକୁ ଚିପୁଡ଼ିବାରେ ଲାଗିପଡନ୍ତି, ପରିଚାଳନା କର୍ତ୍ତୃପକ୍ଷ ଅତିଷ୍ଠ ହୋଇ କାରଖାନା ତାଲବନ୍ଦ କିମ୍ବା ବନ୍ଦକରିବା ଛଡା ଅନ୍ୟ ମାର୍ଗ ଖୋଜି ପାଆନ୍ତି ନାହିଁ ।

ଏହି ଦୁଇଟି ଅନୁଷ୍ଠାନ ଶ୍ରମିକ ଏବଂ ମାଲିକ ଉତ୍ପାଦନ ରଥର ଦୁଇଟି ଚକ । ମାଲିକର ଜମି, ପୁଞ୍ଜି ଏବଂ ପରିଚାଳନା ଆଉ ଶ୍ରମିକର ଝାଳ ନିଗିଡା ପରିଶ୍ରମ ଉତ୍ପାଦନର ରଥକୁ ଗଡାଇ ନିଏ । ମାତ୍ର ଏହାର ସୁସ୍ଥ ଗତି ପଥରେ ଅନେକ ଅନ୍ତରାୟ ମଧ୍ୟ ରହିଛି । ସେଗୁଡ଼ିକ ଉଭୟ ପକ୍ଷକୁ ପଛକୁ ଟାଣନ୍ତି । ପ୍ରଥମେ ମାଲିକ କଥା ବିଚାର କରାଯାଉ । କଞ୍ଚାମାଲ ଅଭାବ, ଉତ୍ପାଦିତ ବସ୍ତୁର ମାନ୍ଦାବଜାର, ପ୍ରାକୃତିକ କିମ୍ବା ଅନ୍ୟାନ୍ୟ କାରଣରୁ ବିଜୁଳି ଶକ୍ତିର ଅଭାବ ମାଲିକର ମେରୁଦଣ୍ଡକୁ ଭାଙ୍ଗିଦିଏ । ଅନ୍ୟ ପକ୍ଷରେ ଶ୍ରମିକମାନେ ସ୍ୱପ୍ନବାଦୀ ଶ୍ରମିକ ସଂଗଠନ, ବହୁଦଳୀୟ ବ୍ୟବସ୍ଥାରେ ଶ୍ରମିକଶକ୍ତି ବିଭାଜନ, ମାଲିକର ବିଘଟନ ଏବଂ ପାତର ଅନ୍ତର ନୀତିରେ ଶ୍ରମିକର ମନ ଉଦ୍‌ଭ୍ରାନ୍ତ ଏବଂ ଉତକ୍ଷିପ୍ତ ହୋଇ ଭୁଲବାଟରେ ପରିଚାଳିତ ହୋଇଥାଏ । ଫଳରେ ସଂଘର୍ଷ ଅନିବାର୍ଯ୍ୟ ହୋଇ ଉଠେ ।

ଏହି ସମସ୍ତ ବ୍ୟବସ୍ଥାକୁ ବିଚାର ନ କରି ଶ୍ରମିକ ଅଶାନ୍ତି ମୂଳରେ କେବଳ ରାଜନୀତି ରହିଛି ବୋଲି ଅନେକ ଅତି ଶସ୍ତା ଭାବରେ କହିବା ଅଭିଯୋଗ ହୁଏ । ସେମାନଙ୍କୁ ଅବା ଦୋଷ ଦେଇ ଲାଭ କ'ଣ ? ଆମେ ଆଜି ପ୍ରତ୍ୟେକ କଥା ମୂଳରେ ରାଜନୀତିର ଅସ୍ତିତ୍ୱ ଉପଲବ୍ଧି କରୁ । ପ୍ରତି ଅଶାନ୍ତି କାରଣ ସ୍ୱରୂପ ରାଜନୀତିକୁ ଜୋର ଜବରଦସ୍ତ ଟାଣି ଆଣୁ । ଏପରିକି କେହି କେହି ରାଜନୀତିରେ ମଧ୍ୟ ପୋଲିଟିକ୍ସ ପଶିଗଲାଣି ବୋଲି କହି ପକାନ୍ତି । ବିଶେଷକରି ଆମ ଦେଶର ଶ୍ରମିକ ସଂଗଠନଗୁଡ଼ିକ ମୁଖ୍ୟତଃ ରାଜନୀତିରେ ଥିବା ଲୋକଙ୍କଦ୍ୱାରା ପରିଚାଳିତ ହେଉଥିବାରୁ ଶ୍ରମିକ ଅଶାନ୍ତି ସହ ରାଜନୀତିକୁ ଯୋଡ଼ିବା ଖୁବ ସହଜ ସୁବିଧାଜନକ ହେଉଛି ଏଣୁ ବର୍ତ୍ତମାନ ପ୍ରଶ୍ନ ଉଠୁଛି ଯେ ଶ୍ରମିକ ଅଶାନ୍ତି ରହିବ ନାହିଁକି? ମାତ୍ର ଟିକିଏ ନିବିଷ୍ଟ ମନରେ ଚିନ୍ତାକଲେ ଏହା ସ୍ପଷ୍ଟ ହୋଇ ଯିବ ଯେ ଶ୍ରମିକ ସଂଗଠନମାନଙ୍କରୁ ରାଜନୀତିକୁ ଦୂରେଇ ଦିଆଯାଇ ପାରିବ ନାହିଁ ।

ଆମଦେଶରେ ଗଣତନ୍ତ୍ରରେ ବହୁ ଦଳୀୟ ବ୍ୟବସ୍ଥା ରହିଛି । ପ୍ରତି ରାଜନୈତିକ ଦଳର ଶ୍ରମିକମାନଙ୍କ ପ୍ରତି ଦରଦ ଅଛି ଏବଂ ସେମାନେ ବିଭିନ୍ନ ଉପାୟରେ ଶ୍ରମିକମାନଙ୍କୁ ନିଜ ଭାବ ଧାରାରେ ଅନୁପ୍ରାଣିତ କରି ନିଜ ନିଜର ଅଂଶ ଦଖଲ କରି ନିଅନ୍ତି । ଦ୍ୱିତୀୟତଃ ଆମ ଦେଶରେ ପ୍ରଚଳିତ ଶ୍ରମିକ ସଂଘ

ଆଇନ, ୧୯୨୬ ଶ୍ରମିକ ସଂଗଠନମାନଙ୍କରେ ରାଜନୀତିର ପ୍ରବେଶକୁ ପ୍ରଶ୍ରୟ ବା ଅବାଧ ପ୍ରବେଶ ଦେଇଛି । ରାଜନୈତିକ ପାର୍ଟି ପ୍ରତିଷ୍ଠାର ସୁବିଧା ୨୫୦ ଠାରୁ ୭୪୯ ସଭ୍ୟ ଥିବା ଶ୍ରମିକ ସଂଗଠନର ବାର୍ଷିକ ସମୀକ୍ଷା ନିମନ୍ତେ ବିଧାନସଭା ସଭ୍ୟ ସଂସଦ ସଭ୍ୟ ଏବଂ ନଗର ପାଳିକା କିମ୍ବା ବିଜ୍ଞାପିତ ଅଞ୍ଚଳ ପରିଷଦର ସଭ୍ୟମାନଙ୍କ ବାର୍ଷିକ ବିବରଣୀରେ ସ୍ୱାକ୍ଷର, କାର୍ଯ୍ୟକାରୀ ପରିଷଦରେ ଅର୍ଦ୍ଧେକ ସଂଖ୍ୟକ ସଭ୍ୟ ଅଣ ଶ୍ରମିକଙ୍କ ଦ୍ୱାରା ପୂରଣ ସୁବିଧା ଶ୍ରମିକ ସଂଘ ଆଇନ ୧୯୬୬ରେ ରହିଥିବାରୁ ଏହା ସମ୍ଭବପର ହୋଇଛି ।

ତୃତୀୟତଃ ଶ୍ରମିକମାନେ ମଧ୍ୟ ଲକ୍ଷ୍ୟ କରୁଛନ୍ତି ଯେ ମାଲିକମାନଙ୍କର ମଧ୍ୟ ସଂଗଠନ ରହିଛି ଏବଂ ସେମାନେ ଅନେକ କ୍ଷେତ୍ରରେ ରାଜନୈତିକ ଚାପ ପକାଇ ନିଜର ସୁବିଧା ହାସଲ କରି ପାରୁଛନ୍ତି । ତେଣୁ ଶ୍ରମିକମାନେ ମଧ୍ୟ ରାଜନୈତିକ ନେତାମାନଙ୍କ ସାହାଯ୍ୟରେ ନିଜର ଦାବୀ ହାସଲ କରିବାରେ ବାଧକ ରହିଛି କେଉଁଠି ?

ଏହି ସବୁ ସାଙ୍ଗକୁ ଆମେ ଭୁଲିଗଲେ ଚଳିବ ନାହିଁ ଯେ ଆମର ପ୍ରାୟ ଶତକଡା ୩୬ ଭାଗ କେବଳ ସ୍ୱାକ୍ଷର କରି ଜାଣନ୍ତି ଅର୍ଥାତ୍ ଶତକଡା ୬୪ ଭାଗ ଅଶିକ୍ଷିତ । ଏହି ଅଶିକ୍ଷିତ ସଂଖ୍ୟା ଖଟିଖିଆ ଶ୍ରମିକ ଏବଂ ବିଶେଷକରି ଗ୍ରାମିଣ ଶ୍ରମିକମାନଙ୍କ ମଧ୍ୟରେ ବେଶୀ ରହିଛନ୍ତି । ଶ୍ରମିକମାନେ ଏକ ପକ୍ଷରେ ପ୍ରାୟ ଅଶିକ୍ଷିତ ଏବଂ ଅପର ପକ୍ଷରେ ଆମ ଦେଶର ଆଇନ କାନୁନ ବିଶେଷ କରି ଶ୍ରମ ଆଇନ ଏବଂ ଅଦାଲତ ଅପାଠୁଆ କିମ୍ବା କମପାଠୁଆଙ୍କୁ ସହଜରେ ପାଖରେ ପୂରାଇ ଦେଉନି । ଏଣୁ ଆମ ଶ୍ରମିକମାନେ ପଢ଼ାଶୁଣା ଜାଣିଥିବା ଶ୍ରମ ଆଇନ ଅଭିଜ୍ଞ ରାଜନୈତିକ ଲୋକଙ୍କ ପାଖରେ ପହଞ୍ଚନ୍ତି । ଏହା ମଧ୍ୟ ସ୍ୱୀକୃତ ଯେ ଆମ ଦେଶର ଶ୍ରମିକ ସଂଗଠନର ଇତିହାସରେ ରାଜନୈତିକ ନେତାଙ୍କ ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ । ସେମାନେ ରୀତିମତ ସଂଗ୍ରାମ କରି ଶ୍ରମିକମାନଙ୍କର ନ୍ୟାଯ୍ୟ ଦାବୀ ହାସଲ କରିଛନ୍ତି ଏବଂ ଶ୍ରମିକମାନଙ୍କ ପାଇଁ ବିଭିନ୍ନ ମାର୍ଗ ଉନ୍ମୋଚିତ କରିଛନ୍ତି । ଏଣୁ ସଂକ୍ଷେପରେ ଶ୍ରମିକ ସଂଗଠନମାନଙ୍କରେ ରାଜନୈତିକ ଅନୁପ୍ରବେଶ ପରିବର୍ତ୍ତେ ସ୍ୱାଭାବିକ ସ୍ଥିତି କହିଲେ ଯଥାର୍ଥ ହେବ ।

ବର୍ତ୍ତମାନ ଦେଖିବା ଶ୍ରମିକ ସଂଘୀୟ ରାଜନୀତି କିପରି ଶ୍ରମିକ ଅଶାନ୍ତି ବୃଦ୍ଧିରେ ସହାୟକ ହେଉଛି । ପ୍ରଥମତଃ ଶ୍ରମିକ ସଂଗଠନମାନଙ୍କ ମଧ୍ୟରେ ଅନ୍ତଃ ଏବଂ ବହିଃ ସଂଘର୍ଷ ନିମନ୍ତେ ରାଜନୀତିକୁ ବିଶେଷ ଭାବରେ ଦାୟୀ କରାଯାଇଥାଏ । ଫଳରେ ଗୋଟିଏ କାରଖାନା ବା ଶିଳ୍ପରେ କାର୍ଯ୍ୟରତ ଶ୍ରମିକମାନେ ବହୁ ଗୋଷ୍ଠୀରେ ବିଭକ୍ତ ହୋଇଯାନ୍ତି । ସେମାନଙ୍କ ମଧ୍ୟରେ କ୍ଷମତା ଓ ସ୍ୱାର୍ଥର ଲଢ଼େଇ ସାଙ୍ଗକୁ ମାଲିକ ବା ପରିଚାଳନା କର୍ତ୍ତୃପକ୍ଷଙ୍କ ବିଭାଜନ ଏବଂ ଶାସନ ନୀତି ପରିବେଶକୁ ଆହୁରି କଳୁଷିତ କରି ଦେଉଛି । ଏହାଫଳରେ ଶ୍ରମିକମାନଙ୍କର ନ୍ୟାଯ୍ୟ ଦାବୀ ହାସଲ ସକାଶେ ସଂଘବଦ୍ଧ ଉଦ୍ୟମ ହୋଇ ପାରୁନାହିଁ ଏବଂ ଦ୍ୱିଗୁଣିତ ଭାବେ ଶ୍ରମିକ ଅଶାନ୍ତି ଉପୁଜୁଛି ।

କେତେକ ନିର୍ଦ୍ଦିଷ୍ଟ ଭିସମର ପକ୍ଷୀ ଶରତ ଋତୁ ସହ ସ୍ଥାନ ବୁଲିଲାପରି ଆମ ଦେଶର କେତେକ ଶ୍ରମିକ ସଂଗଠନ କ୍ଷମତାସୀନ ଦଳର ନେତୃତ୍ୱ ପଛରେ ଦଉଡୁଛନ୍ତି । ତେଣୁ ଆଜି ସେମାନେ ଏକ ରାଜନୈତିକ ଦଳର ନେତୃତ୍ୱାଧୀନ ହୋଇଛନ୍ତି ତ ଆସନ୍ତାକାଲି କ୍ଷମତାଚକ୍ର ଘୁରିଲେ ଅନ୍ୟ ରାଜନୈତିକ ଦଳର ନେତୃତ୍ୱକୁ ବରଣ କରିବେ । ଆଉ କେତେକ ଶ୍ରମିକ ସଂଗଠନ ବାମପନ୍ଥୀ କିମ୍ବା ସେହିପରି ଅନ୍ୟ ଦଳମାନଙ୍କ ଦ୍ୱାରା ପରିଚାଳିତ । ଅବଶ୍ୟ ଆମଦେଶର ଅଳ୍ପ କେତେକ ପ୍ରଦେଶକୁ ବାଦ୍ ଦେଲେ ଏମାନେ ମୁଖ୍ୟତଃ କ୍ଷମତାରେ ନ ଥାନ୍ତି । ଆଉ ଗୋଟିଏ ପ୍ରଭାବଶାଳୀ ଶ୍ରମିକ ଗୋଷ୍ଠୀ ହେଉଛି ଆଇ. ଏନ. ଟି. ୟୁ. ସି. । ବିଭିନ୍ନ ଗୋଷ୍ଠୀ ଭିତରେ କନ୍ଦଳ ହେବା ସ୍ୱାଭାବିକ । ନିଜ ନିଜର ପ୍ରତିଷ୍ଠା, ରାଜନୈତିକ ଲକ୍ଷ୍ୟ ହାସଲ ଏବଂ ଶ୍ରମିକମାନଙ୍କ ଦାବୀ ପୂରଣରେ ଭିନ୍ନ ଭିନ୍ନ ଆନ୍ଦୋଳନାତ୍ମକ ପନ୍ଥା ଶ୍ରମିକମାନଙ୍କ ଅଭାବ ଅସୁବିଧାର ଆଶୁ ସମାଧାନ ଆଳରେ ଶ୍ରମିକ ଅଶାନ୍ତିକୁ ବଳବତ୍ତର କରୁଛି ।

ଆମ ଦେଶରେ ଏବେ ମଧ୍ୟ କେତେକ ମାଲିକ ଅଛନ୍ତି ଯେଉଁମାନେ ତାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କ ସହ ବସି ଆପୋଷ ଆଲୋଚନା କରିଥାରେ ଶ୍ରମ ବିବାଦ ଫଇସଲା କରିବାକୁ ନାପସନ୍ଦ କରନ୍ତି । ତେଣୁ ଶ୍ରମିକମାନେ ବାହାରିଆ ରାଜନୈତିକ ନେତୃତ୍ୱକୁ ସ୍ୱୀକାର କରି ମାଲିକଙ୍କୁ ସାମନା କରୁଛନ୍ତି । ଅବଶ୍ୟ ଶ୍ରମିକ ସଙ୍ଗଠନର ନେତୃତ୍ୱରେ ନିଃସ୍ୱାର୍ଥପର ନେତାଙ୍କ ଅଭାବ ନାହିଁ ତଥାପି ଶ୍ରମିକମାନଙ୍କର ଅନେକ ଦୁର୍ବଳତାର ସୁଯୋଗରେ ଫାଇଦା ଉଠାଇବାକୁ ଅନେକ ମଧ୍ୟ ବୃତ୍ତିଭାବ ସ୍ଥୂଳର ରୀତରେ ଗ୍ରହଣ କରି ନେଇଛନ୍ତି । କେତେକ କ୍ଷେତ୍ରରେ ଏମାନେ ଶ୍ରମିକମାନଙ୍କୁ ମିଥ୍ୟା ପ୍ରତିଶ୍ରୁତି ଦେଇ ଆନ୍ଦୋଳନ ଆରମ୍ଭ କରି ଦିଅନ୍ତି । ଅଜ୍ଞ ଶ୍ରମିକ ନ ବୁଝି ନ ଶୁଣି ଆନ୍ଦୋଳନରେ ଝାସ ଦେଇ ଶିକାର ମଧ୍ୟ ହୋଇଯାନ୍ତି ।

ଏସବୁ କ୍ଷେତ୍ରରେ ଆଉ ଗୋଟିଏ କଥା ବିଚାର କରିବାର କଥା ଯେଉଁ ରାଜନୈତିକ ନେତାମାନେ ଶ୍ରମିକ ସଙ୍ଗଠନରେ ନେତୃତ୍ୱ ନେଉଛନ୍ତି ସେମାନଙ୍କର ପେଟ ପାଟଣାର କଥା । ସେମାନେ ଉପାସ ରହି କ'ଣ ଶ୍ରମିକଙ୍କୁ ନେତୃତ୍ୱ ଦେବେ । ସେମାନେତ ଆଉ ଶ୍ରମିକମାନଙ୍କ ପରି ମାସକୁ ମାସ ମଜୁରୀ, ବର୍ଷକୁ ବର୍ଷ ବୋନସ ଏବଂ ଅନ୍ୟାନ୍ୟ ସୁବିଧା ପାଉ ନାହାନ୍ତି । ଶ୍ରମିକ ସଙ୍ଗଠନ ପରିଚାଳନା ହିଁ ତାଙ୍କର ମୁଖ୍ୟ ଧନ୍ଦା । ସେମାନେ ଚଳିବେ କିପରି ? ତେଣୁ ସେମାନେ ପରୋକ୍ଷ କିମ୍ବା ପ୍ରତ୍ୟକ୍ଷ ଭାବରେ ଶ୍ରମିକ ସଙ୍ଗଠନର ପାଣ୍ଠିର କିଛି ଅଂଶ ନିଜ ଗୁଜୁରାଣ ମେଣ୍ଟାଇବାରେ ବ୍ୟୟ କରନ୍ତି । ଏଠାରେ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା ଯେ ଶ୍ରମିକମାନେ ସାଧାରଣ ଭାବରେ ନିଜର ମାସିକ ଚାନ୍ଦା କିମ୍ବା ଅନ୍ୟାନ୍ୟ ଦେୟ ନିୟମିତ ଭାବରେ ଦାଖଲ କରିବାରେ ଅବହେଳା କରିଥାଆନ୍ତି । ସେମାନେ ନିଜର ଅସୁବିଧା ପଡ଼ିଲେ କିମ୍ବା ସେମିତି ଏକ ଅସ୍ୱାଭାବିକ ପରିସ୍ଥିତି ଉପୁଜିଲେ ଶ୍ରମ ସଙ୍ଗଠନ ଦପ୍ତରକୁ ଯାଆନ୍ତି । ତେଣୁ ସେମାନଙ୍କୁ ସବୁବେଳେ ଗୋଟିଏ ଉତ୍ତେଜନାପୂର୍ଣ୍ଣ ଅବସ୍ଥାରେ ରଖିଲେ ଯାଇ ଚାନ୍ଦା ଏବଂ ଅନ୍ୟାନ୍ୟ ଦେୟ ଠିକ୍ ସମୟରେ ଆଦାୟ ହେବ । ଏଣୁ ଶ୍ରମିକ ସଙ୍ଗଠନକୁ ଧନ୍ଦା ବା ବୃତ୍ତି କରି ଚଳୁଥିବା ନେତାମାନେ

ଶ୍ରମିକମାନଙ୍କୁ ବିଭିନ୍ନ ମାର୍ଗରେ ଉତ୍ତେଜିତ କରି ଶ୍ରମିକ ଅଶାନ୍ତି ସୃଷ୍ଟି କରୁଛନ୍ତି ।

ପ୍ରତ୍ୟେକ ଶିଳ୍ପ ବା କାରଖାନାରେ ଗୋଟିଏ ଗୋଟିଏ ସ୍ୱୀକୃତିପ୍ରାପ୍ତ ଶ୍ରମିକ ସଙ୍ଗଠନ ରହିବା ବ୍ୟବସ୍ଥା ରଖାଯାଇଛି । ବହୁ ଶ୍ରମିକ ସଙ୍ଗଠନ ଥିବା କଳକାରଖାନାମାନଙ୍କରେ ଏଥି ସକାଶେ ବରାବର ଲଢ଼େଇ ଲାଗିଛି । ନିଜ ନିଜ ଗୋଷ୍ଠୀର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ନିମନ୍ତେ ଶ୍ରମିକ ସଙ୍ଗଠନ-ମାନେ ବିଭିନ୍ନ ପ୍ରକାର ଆନ୍ଦୋଳନାତ୍ମକ ପନ୍ଥା ଅବଲମ୍ବନ କରି ଶିଳ୍ପରେ ବିଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିଛନ୍ତି ।

ଏସବୁ ସତ୍ତ୍ୱେ ଆମ ଦେଶର କଳକାରଖାନାମାନଙ୍କରେ ରାଜନୀତିପ୍ରେରିତ ଶ୍ରମିକ ଅଶାନ୍ତିକୁ ରୋକାଯାଇ ପାରିବ ନାହିଁ ବୋଲି କହିବା ଠିକ୍ ହେବନାହିଁ ଏବଂ ଶ୍ରମିକ ସଙ୍ଗଠନରେ ରାଜନୈତିକ ନେତୃତ୍ୱ ଦ୍ୱାରା ଶ୍ରମିକ ଅଶାନ୍ତି କେତେକାଂଶରେ ଏଡ଼ାଯାଇ ପାରିବା ବିଷୟ ମଧ୍ୟ ଅସ୍ୱୀକାର କରାଯାଇ ପାରୁନାହିଁ । ଅନ୍ତତଃ ପକ୍ଷେ ଶ୍ରମିକ ସଙ୍ଗଠନରେ ରାଜନୈତିକ ନେତୃତ୍ୱ ଅମଣିଆ ମାଲିକ ବା ପରିଚାଳନା କର୍ତ୍ତୃପକ୍ଷଙ୍କୁ ମଣେଇ ପାରୁଛି । ସେହିପରି ଶ୍ରମିକ ସଂଘୀୟ ରାଜନୀତିର କୁ ପ୍ରଭାବକୁ ସୀମିତ କରିବା ନିମନ୍ତେ କେତେକ ଉତ୍ତମ ଦିଗ ମଧ୍ୟ ସନ୍ଧାନ କରାଯାଇପାରେ ।

ଆମ ଦେଶ ଗୋଟିଏ ଜନମଙ୍ଗଳ ରାଷ୍ଟ୍ର । ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମର ବିକାଶ ନିମନ୍ତେ ସରକାରୀ ଗ୍ରାଣ୍ଟର ଯେପରି ବ୍ୟବସ୍ଥା ଅଛି, ଶ୍ରମିକ ସଂଘର ଶିକ୍ଷା ଏବଂ ବିକାଶ-ମୂଳକ କାର୍ଯ୍ୟକ୍ରମରେ ସରକାରୀ ଅନୁଦାନ ବିଶେଷ ଫଳପ୍ରଦ ହେଉଛି । ବିଶେଷ କରି କେନ୍ଦ୍ରୀୟ ଶ୍ରମିକଶିକ୍ଷା ପରିଷଦ ଏ ଦିଗରେ ଅର୍ଥ ମଞ୍ଜୁର କରିଥାଆନ୍ତି । ଏହା ଆହୁରି ବ୍ୟାପକ ହେଲେ ଶ୍ରମିକମାନେ ଅଧିକ ସଚେତନ ଏବଂ ଦାୟିତ୍ୱବାନ ହେବା ଆଶା କରାଯାଇପାରେ ।

ମୋଟାମୋଟି ଭାବରେ ଶ୍ରମିକମାନେ ଯେତେ ଶିକ୍ଷିତ ଏବଂ ସଚେତନ ହୋଇ ପାରିବେ ସେମାନେ ସେତେଦୂର ରାଜନୈତିକ କୁ ପ୍ରଭାବରୁ ମୁକ୍ତ ରହି ପାରିବେ ।

ପରିସଂଖ୍ୟାନବିତ୍
ରାଜ୍ୟ ଶ୍ରମ ନର୍ଦ୍ଦେଶାଳୟ, ଭୁବନେଶ୍ୱର ।



ରାଜ୍ୟ ଡାଇରେକ୍ଟର୍ସ ଜେନେରାଲ୍ / ଇନିସ୍ପେକ୍ଟର୍ସ ଜେନେରାଲ୍ ଅଫ୍ ପୋଲିସ୍ଙ୍କ ବାର୍ଷିକ ଅଧିବେଶନରେ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ।

# ସମାନ କାମ ପାଇଁ ସମାନ ମଜୁରୀ

ଶ୍ରୀମତୀ କାନନବାଳା ମିଶ୍ର

କେଉଁ ଆବାହମାନ କାଳରୁ ମହିଳାମାନେ ପୁରୁଷମାନଙ୍କ ସହ କାନ୍ଧରେ କାନ୍ଧ ମିଳାଇ କାର୍ଯ୍ୟ କରି ଆସିଛନ୍ତି । ଏପରିକି କେତେକ କାର୍ଯ୍ୟରେ ପୁରୁଷମାନେ ଯେତେବେଳେ ଅସଫଳ ହୋଇଛନ୍ତି, ମହିଳାମାନେ ଆଗେଇ ଆସି ତାହାର ସମାଧାନ କରିଛନ୍ତି । ଯୁଦ୍ଧ, ରାଜନୀତି, ସମାଜ ସେବାଠାରୁ ଆରମ୍ଭ କରି ଆକାଶରେ ଉଡ଼ିବା ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ମହିଳାମାନେ ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି । ତେବେ ଆଜିର ଏହି ବିଂଶ ଶତାବ୍ଦୀର ଶେଷ ଭାଗରେ ପୁରୁଷ ଶ୍ରମିକ ଏବଂ ମହିଳା ଶ୍ରମିକଙ୍କ ମଧ୍ୟରେ ମଜୁରୀରେ ତାରତମ୍ୟ କାହିଁକି ? ସମାନ କାମ ପାଇଁ ପୁରୁଷମାନେ ଯେତେବେଳେ ସମାନ ମଜୁରୀ ପାଉଛନ୍ତି, ମହିଳାମାନେ ସେଥିରୁ ବଞ୍ଚିତ ହେବେ କାହିଁକି ? ଏହାକୁ ଆଖି ଆଗରେ ରଖି ଆନ୍ତର୍ଜାତିକ ମହିଳା ବର୍ଷ ୧୯୭୫ ମସିହାରେ ଭାରତ ସରକାର ସମାନ ମଜୁରୀ ଅଧ୍ୟାଦେଶ ଜାରି କରିଛନ୍ତି । ଏହା ପରବର୍ତ୍ତେ ଏହି ଅଧ୍ୟାଦେଶ ଆଇନରେ ପରିଣତ ହୋଇଛି । ସମାନ କାମ ପାଇଁ ସମାନ ମଜୁରୀ ଆଇନଗତ ଭାବେ ହାସଲ କରିବା ନିମନ୍ତେ ଏହା ଏକ ବଳିଷ୍ଠ ପଦକ୍ଷେପ ।

ସ୍ୱର୍ଗତ ରାଷ୍ଟ୍ରପତି ଫକିରୁଦ୍ଦିନ ଅଲି ଅହମ୍ମଦ ଏହି ଅଧ୍ୟାଦେଶରେ ସ୍ୱାକ୍ଷରକରି ଘୋଷଣା କରିଛନ୍ତି—

"ଉଭୟ ପୁରୁଷ ଓ ମହିଳା ଶ୍ରମିକଙ୍କୁ ସମାନ ମଜୁରୀ ଦେବା ତଥା ଲିଙ୍ଗ ବିଗ୍ଭର କରି ନିଯୁକ୍ତିରେ ଭେଦାଭେଦ ନ କରିବା ଏବଂ ତତ୍ ସଂପର୍କୀୟ ବିଷୟ ଉପରେ ଏହି ଅଧ୍ୟାଦେଶ ଆଧାରିତ । "

ସମାନ ମଜୁରି ଆଇନ, ୧୯୭୬ ଭାରତର ପ୍ରାୟ ସବୁ ଶିଳ୍ପନୁଷ୍ଠାନ ଏବଂ କଳ କାରଖାନାକୁ ଲାଗୁ କରାଯାଇଛି । ପୁରୁଷ ଏବଂ ମହିଳା ଶ୍ରମିକଙ୍କୁ ସମାନ କାମ ପାଇଁ ସମାନ ଭାବେ ମଜୁରୀ ଦେବା ଏହି ଆଇନର ମୂଳ ଲକ୍ଷ୍ୟ । ଏହି ଆଇନର ୨ (ଛ) ଧାରା ଅନୁସାରେ ସମାନ କାମ କିମ୍ବା ସେହି ପ୍ରକାରର କାର୍ଯ୍ୟର ସଂଜ୍ଞା ନିରୂପଣ କରାଯାଇଛି । ତଦନୁସାରେ—"ନିଯୁକ୍ତି ସର୍ତ୍ତରେ ଦକ୍ଷତା କିମ୍ବା ପରିଶ୍ରମ ସଂପର୍କରେ କୌଣସି ବ୍ୟବହାରିକ ଗୁରୁତ୍ୱ ଆରୋପ କରାଯାଇ ନଥିବା ସ୍ଥଳେ ସମାନ କାର୍ଯ୍ୟାବସ୍ଥାରେ ପୁରୁଷ କିମ୍ବା ସ୍ତ୍ରୀ ଦ୍ୱାରା ସାଧିତ ହୋଇଥିଲେ ତାହା ସମାନ କାର୍ଯ୍ୟ ରୂପେ ବିବେଚିତ ହେବ ।" ସମାନ ମଜୁରୀ ଆଇନର ଏହି ବ୍ୟବସ୍ଥା ଅନୁସାରେ ମାଲିକ ବା ନିଯୋକ୍ତା ମଜୁରୀ ଦେବାରେ ପୁରୁଷ ଓ ସ୍ତ୍ରୀ ଶ୍ରମିକଙ୍କୁ ଲିଙ୍ଗ ଭେଦରେ ଆଉ ବାଛ ବିଗ୍ଭର କରି ପାରିବେ ନାହିଁ ।

ସମାନ ମଜୁରୀ ଆଇନର ଅନ୍ୟ ଏକ ବ୍ୟବସ୍ଥା ଅନୁସାରେ ନିଯୁକ୍ତି ସମୟରେ କୌଣସି ନିଯୋକ୍ତା ପୁରୁଷ ଓ ମହିଳା ଶ୍ରମିକଙ୍କ ମଧ୍ୟରେ ବାଛ ବିଗ୍ଭର କରି ପାରିବେ ନାହିଁ । ବିଶେଷ କରି ସମାନ କାର୍ଯ୍ୟ କିମ୍ବା ସେହି ଧରଣର କାର୍ଯ୍ୟ ପାଇଁ ନିଯୁକ୍ତି ସମୟରେ କୌଣସ ଭେଦାଭେଦ କରାଯାଇ ପାରିବ ନାହିଁ । ବାସ୍ତବିକ ବିଗ୍ଭର କରିବାକୁ ଗଲେ ମହିଳାମାନଙ୍କୁ ଅବଳା କୁହାଯାଇ କୌଣସି କାର୍ଯ୍ୟକୁ ଅପାରଗ ବୋଲି କହିବାରେ କୌଣସ ଯୁକ୍ତି ନାହିଁ । ଆମ ମନରେ ଯଦି ଏପରି କିଛି ପୁରୁଣାକାଳିଆ ମନୋବୃତ୍ତି ରହିଯାଇଛି, ତାକୁ ବଦଳାଇବାକୁ ପଡ଼ିବ ।

ସମାନ ମଜୁରୀ ଆଇନର ଅନ୍ୟ ଏକ ବ୍ୟବସ୍ଥା ଅନୁସାରେ ମହିଳା ଶ୍ରମିକମାନଙ୍କର ନିଯୁକ୍ତି ସଂପର୍କରେ ସୁପାରିଶ କରିବା ନିମନ୍ତେ ଉପଦେଷ୍ଟା ସମିତି ଗଠନ କରିବା ବ୍ୟବସ୍ଥା ରହିଛି । ରାଜ୍ୟ ଏବଂ କେନ୍ଦ୍ର ସରକାର ତାଙ୍କ ପରିସରଭୁକ୍ତ ଶିଳ୍ପ ଅନୁଷ୍ଠାନ ପାଇଁ ଏହି ଉପଦେଷ୍ଟା ସମିତି ଗଠନ କରିପାରିବେ । ଏଥିରେ ଅନ୍ୟୂନ ଦଶଜଣ ସଭ୍ୟ ରହିବେ ଏବଂ ସେଥିରୁ ଅର୍ଦ୍ଧେକ ମହିଳା ରହିବା ବାଞ୍ଛନୀୟ । ବିଭିନ୍ନ ଶିଳ୍ପ ପାଇଁ ଭିନ୍ନ ଭିନ୍ନ ଉପଦେଷ୍ଟା ସମିତି ରହିପାରିବେ ।

ଏହି ଆଇନକୁ କାର୍ଯ୍ୟକାରୀ କରିବା ନିମନ୍ତେ କେନ୍ଦ୍ର ଓ ରାଜ୍ୟ ସରକାର ତାଙ୍କ ଶ୍ରମ ବିଭାଗର ପଦାଧିକାରୀମାନଙ୍କୁ ପରିଦର୍ଶକଭାବେ ନିଯୁକ୍ତ କରିଛନ୍ତି । ତଦନୁସାରେ ସେମାନେ ନିଜ ନିଜ ନିର୍ଦ୍ଧାରିତ ଅଞ୍ଚଳରେ ଏହି ଆଇନର କାର୍ଯ୍ୟକାରିତା ସଂପର୍କରେ ବିଭିନ୍ନ ଶିଳ୍ପାନୁଷ୍ଠାନ ପରିଦର୍ଶନ କରୁଛନ୍ତି । ଏଥି ନିମନ୍ତେ ସେମାନେ ସଂପୃକ୍ତ ଶିଳ୍ପ ଅନୁଷ୍ଠାନର ମଜୁରୀ ଖାତା ଏବଂ ଅନ୍ୟାନ୍ୟ ଆବଶ୍ୟକୀୟ ଦଲିଲ ତନଖି କରିବା ନିମନ୍ତେ ଆଇନଗତ ସୁବିଧା ପାଉଛନ୍ତି ।

ସମାନ ମଜୁରୀ ଆଇନ ଲଂଘନ କଲେ କଠୋର ଦଣ୍ଡର ବ୍ୟବସ୍ଥା ରହିଛି । ବିଶେଷ କରି ଲିଙ୍ଗଭେଦରେ ସମାନ ମଜୁରୀ ଦେବାରେ ଖିଲାପ କଲେ ଏବଂ ନିଯୁକ୍ତି କ୍ଷେତ୍ରରେ ମହିଳାମାନଙ୍କ ପ୍ରତି ବାଛ ବିଚାର କଲେ ଟ ୫,୦୦୦ଙ୍କା ପର୍ଯ୍ୟନ୍ତ ଅର୍ଥ ଦଣ୍ଡରେ ଦଣ୍ଡିତ ହେବା ବ୍ୟବସ୍ଥା ରହିଛି । କୌଣସି ନିଯୋକ୍ତା ଏହି ଆଇନ ଅନୁସାରେ ନିଯୁକ୍ତ ପରିଦର୍ଶକ (ଶ୍ରମ ଅଧିକାରୀ) ମାନଙ୍କୁ କୌଣସି ଦଲିଲ କିମ୍ବା ଦସ୍ତାବିଜ କିମ୍ବା ଆବଶ୍ୟକୀୟ ତଥ୍ୟ ଯୋଗାଇବାରେ ଉପେକ୍ଷା କିମ୍ବା ବାକି କଲେ ୫୦୦ ଟଙ୍କା ପର୍ଯ୍ୟନ୍ତ ଅର୍ଥ ଦଣ୍ଡରେ ଦଣ୍ଡିତ ହେବେ। ଏହି ଆଇନର କୌଣସି ଧାରା ଖିଲପ ହେବାର ୩ମାସ ମଧ୍ୟରେ ନିଯୋକ୍ତାମାନଙ୍କ ବିରୁଦ୍ଧରେ ମେଟ୍ରୋପଲିଟାନ ମାଜିଷ୍ଟ୍ରେଟ କିମ୍ବା ପ୍ରଥମ ଶ୍ରେଣୀୟ ବିଚାର ବିଭାଗୀୟ ମାଜିଷ୍ଟ୍ରେଟଙ୍କ ଅଦାଲତରେ ମକଦ୍ଦମା ଆଗତ କରାଯାଇପାରିବ ।

ସମାନ ମଜୁରୀ ଆଇନ କାର୍ଯ୍ୟକାରୀ କରିବା ନିମନ୍ତେ କେନ୍ଦ୍ର ସରକାର ଆବଶ୍ୟକୀୟ ନିୟମାବଳୀ ପ୍ରଣୟନ କରିଛନ୍ତି । ଭାରତର ସମସ୍ତ ପ୍ରଦେଶରେ ଏହି ଆଇନ୍ ବଳବତ୍ତର ରହିଛି । ତଥାପି ସୁଦୂର ମଫସଲରେ ଏହି ଆଇନର ବାର୍ତ୍ତା ଆଜିଯାଏ ପହଞ୍ଚି ପାରିନାହିଁ । ଫଳରେ ମହିଳା ଶ୍ରମିକମାନେ ନିର୍ଯ୍ୟାତିତା ହେବାର ଆଶଙ୍କା ରହିଛି । ତେଣୁ ଏହିପରି ଏକ ପ୍ରଗତିଶୀଳ ଆଇନ୍ ଦେଶର କୋଣେ କୋଣେ ପହଞ୍ଚିବା ଦରକାର । ବିଶେଷକରି ଆଦିବାସୀ, ହରିଜନ ତଥା ଗ୍ରାମିଣ ମହିଳାମାନଙ୍କ ପାଖରେ ଏହି ଆଇନର ସନ୍ଦେଶ ପହଞ୍ଚାଇବା ନିମନ୍ତେ ସରକାରଙ୍କ ସମେତ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନ ଉଚିତ ପଦକ୍ଷେପ ନେବା ବାଞ୍ଛନୀୟ । ଏହା ଫଳରେ ମହିଳା ଶ୍ରମିକମାନଙ୍କର ଗୌରବ ଏବଂ ମର୍ଯ୍ୟାଦା ରକ୍ଷା କରାଯାଇ ପାରିବ ।

କ୍ୱାଟର ନଂ IV A, 20/3
ଅଶୋକ ନଗର
ଭୁବନେଶ୍ୱର




ବିଶ୍ୱ ସେବା ସଂସ୍ଥା ଦିବସ ଉତ୍ସବରେ ସ୍ୱାସ୍ଥ୍ୟ ରାଜ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ

# ଲାବ୍ ଟୁ ଲ୍ୟାଣ୍ଡ ଯୋଜନା

ଡକ୍ଟର ବଳଭଦ୍ର ଭୂଷଣ ରଥ
ଓ
ଶ୍ରୀ ରବୀନ୍ଦ୍ର କୁମାର ସଜ

ଭାରତରେ କୃଷି ଗବେଷଣା ଏବଂ କୃଷି ସଂପର୍କୀୟ ଅନ୍ୟାନ୍ୟ ଅନୁସନ୍ଧାନ କାର୍ଯ୍ୟ ପାଇଁ ଦିଲ୍ଲୀଠାରେ ଭାରତୀୟ କୃଷି ଅନୁସନ୍ଧାନ ପରିଷଦ ପ୍ରତିଷ୍ଠିତ । ଗତ ୧୯୭୯ ମସିହାରେ ଏହାର ୫୦ ବର୍ଷ ପୂର୍ତ୍ତି ହେଲା । କୃଷି ସଂପର୍କୀୟ ବହୁ ଗବେଷଣା ଲବ୍‌ଧ ବିଷୟ ବହୁ ଦେଶରେ ମହଜୁଦ ଅଛି । ଏସବୁ ଯଥା ସମୟରେ ଏବଂ ଯଥାର୍ଥ ଭାବରେ କୃଷକମାନଙ୍କ ପାଖରେ ପହଞ୍ଚିବା ଆବଶ୍ୟକ । କୃଷି ବିଦ୍ୟା କ୍ଷେତ୍ରରେ ବିଜ୍ଞାନର ଏହି ସଂପ୍ରସାରଣ ଏକ ଅତି ଆବଶ୍ୟକୀୟ ଓ ଗୁରୁତ୍ୱପୂର୍ଣ୍ଣ ବିଷୟ । କୃଷି କ୍ଷେତ୍ରରେ ଗବେଷଣା ଲବ୍‌ଧ ବିଷୟ କୃଷକମାନଙ୍କ ପାଖରେ ଯେ ନ ପହଞ୍ଚୁଥିଲା ଏପରି ନୁହେ । ମାତ୍ର କୃଷି ଅନୁସନ୍ଧାନ ପରିଷଦ ସୁବର୍ଣ୍ଣ ଜୟନ୍ତୀ ବର୍ଷରେ ଏ ସଂପ୍ରସାରଣ କାର୍ଯ୍ୟକ୍ରମକୁ ଆହୁରି ତ୍ୱରାନ୍ୱିତ କରିବାର ମୁଖ୍ୟ ଉଦ୍ଦେଶ୍ୟ ରଖାଗଲା । ଗବେଷଣାଗାର ବା ଲାବୋରେଟରିରୁ କୃଷକର କୃଷିକ୍ଷେତ୍ର ବା ଲ୍ୟାଣ୍ଡକୁ ବିଜ୍ଞାନର ଏ ସଂପ୍ରସାରଣକୁ ସଂକ୍ଷେପରେ ଲାବ୍ ଟୁ ଲ୍ୟାଣ୍ଡ ଆଖ୍ୟା ଦିଆଗଲା । ସଂପ୍ରସାରଣ କ୍ଷେତ୍ରରେ ବିଜ୍ଞାନର ମହତ୍ୱପୂର୍ଣ୍ଣ ଭୂମିକାକୁ ଉପଲବ୍‌ଧି କରିବା ପାଇଁ କ୍ଷୁଦ୍ର, ନାମମାତ୍ର ଚାଷୀ, ଭୂମିହୀନ-ଶ୍ରମିକ ତଥା ଦେଶର ଦରିଦ୍ର ଜନସାଧାରଣଙ୍କୁ ଅଧିକ ସୁଯୋଗ ଦେବା ପାଇଁ ଏହିମାନଙ୍କୁ ହିଁ ଲାବ୍ ଟୁ ଲ୍ୟାଣ୍ଡ ଯୋଜନାରେ ଅଧିକଭାବରେ ଅନ୍ତର୍ଭୁକ୍ତ କରାଗଲା ।

ପ୍ରତ୍ୟେକ କ୍ଷୁଦ୍ର, ନାମମାତ୍ର ବା ସେହିଭଳି ଦରିଦ୍ର ଗ୍ରାମବାସୀମାନଙ୍କ ପାଇଁ କୃଷି ଏବଂ ତତ୍ ସଂପର୍କୀୟ ଅନ୍ୟାନ୍ୟ ଉଦ୍‌ଯୋଗ ଜଡ଼ିତ ଏକ ଏକ କ୍ଷୁଦ୍ର କୃଷି ଯୋଜନା ତିଆର କରିବା ଏହି ଯୋଜନାର ମୂଳ ଲକ୍ଷ୍ୟ । କୃଷି କରୁ ନଥିବା ବା ଜମି ନଥିବା ଦରିଦ୍ର ଗ୍ରାମୀମାନଙ୍କ ପାଇଁ ଗୋ ମହିଷାଦି ପଶୁ, ଘୁସୁରି, ଛେଳି, ମେଣ୍ଢା, ବତକ ତଥା କୁକୁଡ଼ା ପାଳନ, ମାଛ ଚାଷ, ଏଣ୍ଡି ଓ ତସର ପାଳନ, ମହୁଚାଷ, ସ୍ତ୍ରୀ ଲୋକମାନଙ୍କ ପାଇଁ କୃଷି ଓ ପଶୁଜାତ ଦ୍ରବ୍ୟର ଉତ୍ପାଦନ ଏବଂ ସଂରକ୍ଷଣ ଇତ୍ୟାଦି ଯାବତୀୟ ଗାଁ ଗହଳି ସଂପର୍କୀୟ କାର୍ଯ୍ୟକ୍ରମ ମଧ୍ୟ ଏହି ଯୋଜନାର ଅନ୍ତର୍ଭୁକ୍ତ । ଆମ ଗାଁ ଗହଳିରେ ଥିବା ଆଦିବାସୀ, ହରିଜନ ଏବଂ ଅନ୍ୟାନ୍ୟ ଲଘୁ ସଂପ୍ରଦାୟର ଲୋକମାନେ କାର୍ଯ୍ୟକାରୀ କରୁଥିବା ବିଭିନ୍ନ ପାରଂପରିକ କାର୍ଯ୍ୟର ସମୁନ୍ନତି କରିବା ମଧ୍ୟ ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ।

୧୯୭୯ ମସିହାରୁ ଆରମ୍ଭ ହୋଇଥିବା ଏହି ଲ୍ୟାବ୍ ଟୁ ଲ୍ୟାଣ୍ଡ କାର୍ଯ୍ୟକ୍ରମ ପର୍ଯ୍ୟାୟକ୍ରମେ କାର୍ଯ୍ୟକାରୀ ହେଉଅଛି । ୧୯୭୯ ଜୁନ୍ ମାସରୁ ୧୯୮୨ ମସିହା ମେ ମାସ ପର୍ଯ୍ୟନ୍ତ ପ୍ରଥମ ପର୍ଯ୍ୟାୟରେ ସାରା ଦେଶରେ ୫୦ ହଜାର ପରିବାରଙ୍କୁ ନେଇ ଏହି କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ୧୯୮୨ ମସିହା ଜୁନ୍ ମାସରୁ ୧୯୮୪ ମେ ପର୍ଯ୍ୟନ୍ତ ଦ୍ୱିତୀୟ ପର୍ଯ୍ୟାୟରେ ୭୫ ହଜାର ପରିବାର ନିଆ ହୋଇଥିଲେ ଏବଂ ୧୯୮୪ ଜୁନ୍‌ଠାରୁ ୧୯୮୬ ମେ ପର୍ଯ୍ୟନ୍ତ ତୃତୀୟ ପର୍ଯ୍ୟାୟରେ ପ୍ରାୟ ସେତିକି ପରିବାରଙ୍କ ପାଇଁ ଏହି କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେବ ।

କୃଷି ଅନୁସନ୍ଧାନ ପରିଷଦର କାର୍ଯ୍ୟାଳୟରେ ପ୍ରୋଗ୍ରାମ ଡିରେକ୍ଟର କାର୍ଯ୍ୟକ୍ରମର ନିର୍ଦ୍ଦେଶନା ଦିଅନ୍ତି । ସାରା ଭାରତ ବର୍ଷରେ ବିଭିନ୍ନ ପ୍ରଦେଶମାନଙ୍କୁ ନେଇ ଆଠଗୋଟି ଅଞ୍ଚଳ ଏହି କାର୍ଯ୍ୟକ୍ରମକୁ ପର୍ଯ୍ୟବେକ୍ଷଣ କରୁଛନ୍ତି । ଯେପରିକି ଓଡ଼ିଶା, ପଶ୍ଚିମବଙ୍ଗ ଓ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜକୁ ନେଇ ଦ୍ୱିତୀୟ ଅଞ୍ଚଳ ବା ଜୋନର ମୁଖ୍ୟ କାର୍ଯ୍ୟାଳୟ କଲିକତାର ବିଧାନଚନ୍ଦ୍ର କୃଷି ବିଶ୍ୱବିଦ୍ୟାଳୟ, ମୋହନ ପୁରରେ ଅବସ୍ଥିତ । ପ୍ରତ୍ୟେକ ଅଞ୍ଚଳ ବା ଜୋନ୍ ଅଧୀନରେ କୃଷି, ଗୋପାଳନ, ମତ୍ସ୍ୟଚାଷ ଆଦି କୃଷି ସଂପର୍କୀୟ ବିଭିନ୍ନ ଗବେଷଣାଗାର ତଥା ବେସରକାରୀ ସେବାମୂଳକ ଅନୁଷ୍ଠାନମାନ ଏ ପରିବାରମାନଙ୍କୁ ଗ୍ରହଣ କରି ଏ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରୁଅଛନ୍ତି ।

କୃଷି ଅନୁସନ୍ଧାନ ପରିଷଦ ତରଫରୁ ପରିଗ୍ରହଣ କରାଯାଇଥିବା ପରିବାରମାନଙ୍କ ପାଇଁ କୃଷି ଓ ତତ୍‌ସଂପର୍କୀୟ କାର୍ଯ୍ୟକ୍ରମ ଉଦ୍ଦେଶ୍ୟରେ ସାମଗ୍ରୀ ଆକାରରେ କିଛି ଆର୍ଥିକ ସାହାଯ୍ୟ ଦିଆଯାଉଛି । ଗୋଟିଏ ବର୍ଷ ପାଇଁ ଏକ ଶହଟି ପରିବାରକୁ ନିମ୍ନଲିଖିତ ମତେ ସାହାଯ୍ୟର ବ୍ୟବସ୍ଥା ଅଛି:—

| | | |
|---|---|---|
| ୧ । | ଏକ ଏକର ଜମିରେ ବର୍ଷସାରା ୩ ଗୋଟି ଫସଲ କରିବା ପାଇଁ | ଟ ୪୬,୫୦୦'୦୦ |
| ୨ । | ଚାଷୀମେଳା, ପ୍ରଦର୍ଶନୀ, ଇତ୍ୟାଦି | ଟ ୩,୦୦୦'୦୦ |
| ୩ । | କୃଷି ସଂପର୍କୀୟ ମୁଦ୍ରିତ ତଥ୍ୟ ତଥା ପୁସ୍ତିକା ଛାପିବା ପାଇଁ । | ଟ ୧,୦୦୦'୦୦ |
| ୪ । | କୃଷକ ତାଲିମ ପାଇଁ | ଟ ୨,୫୦୦'୦୦ |
| | ମୋଟ୍ .. | ଟ ୫୩,୦୦୦'୦୦ |

କୃଷି ଏବଂ ତତ୍‌ସଂପର୍କୀୟ କାର୍ଯ୍ୟକ୍ରମ ପାଇଁ ଋଷୀମାନଙ୍କୁ ଏହି ଅର୍ଥ ଖାତରୁ ଯେଉଁ ଯେଉଁ ସାମଗ୍ରୀମାନ ଦିଆଯାଇ ପାରିବ, ତାହାର ମଧ୍ୟ ଏକ ତାଲିକା ଦିଆଯାଇଛି, ମୋଟା ମୋଟିଭାବେ ଜଣେ ଋଷୀଙ୍କୁ ବର୍ଷକୁ ପ୍ରାୟ ଟ ୪୬୫ ଙ୍କା ମୂଲ୍ୟର ନିମ୍ନଲିଖିତ ସାମଗ୍ରୀ ଦୁଇବର୍ଷ ପାଇଁ ଦିଆଯାଇ ପାରିବ :—

୧ । କୃଷି—ଉନ୍ନତ ବିହନ, ସାର, ପୋକମରା ଔଷଧ, ମୃତ୍ତିକା ସଂରକ୍ଷଣ ତଥା କୃଷି ଯନ୍ତ୍ରପାତି ।

୨ । ଗୋପାଳନ—ଔଷଧ, ମିଶ୍ରିତ ଦାନା, ଧାତବ ଲବଣ, ଘାସ ମଞ୍ଜି, କୃତ୍ରିମ ପ୍ରଜନନ ଇତ୍ୟାଦି ।

୩ । ଘୁସୁରି ପାଳନ—ଔଷଧ, ମିଶ୍ରିତ ଦାନା, ଘୁସୁରି ଛୁଆ ଯୋଗାଣ ଇତ୍ୟାଦି ।

୪ । କୁକୁଡ଼ା ପାଳନ—କୁକୁଡ଼ା ଛୁଆ ଯୋଗାଣ, ମିଶ୍ରିତ ଦାନା ଏବଂ ଔଷଧ ।

୫ । ମେଣ୍ଢା ଛେଳି ପାଳନ—ମେଣ୍ଢା ଓ ଛେଳି ଛୁଆ ଯୋଗାଣ, ଦାନା ଏବଂ ଔଷଧ ।

୬ । ମତ୍ସ୍ୟଋଷ—ଜାଆଁଳ ଯୋଗାଣ, ମାଛଙ୍କ ପାଇଁ ଦାନା ଏବଂ ମାଛକୁ ଖାଉଥିବା ଶିକାରୀ ଦମନ ।

୭ । ଏଣ୍ଡି, ଟସର ତଥା ମହୁମାଛି ପାଳନ—ଏ ସଂପର୍କୀୟ ଡାଲା, ମହୁବାକ୍‌ସ, ପୋକ ଖାଉଥିବା ଗଛ ଏବଂ ମହୁ ଉତ୍ପାଦନ କରୁଥିବା ଫୁଲଗଛ ରୋପଣ ।

୮ । ଛତୁ ଋଷ—ବିହନ ଏବଂ ଛତୁ ଉତ୍ପାଦନ ପାଇଁ ଆବଶ୍ୟକୀୟ ପଦାର୍ଥ ।

୯ । ଖାଦ୍ୟ ଉତ୍ପାଦନ ପାଇଁ ଆବଶ୍ୟକୀୟ ଯନ୍ତ୍ରପାତି ।

ଏହାଛଡ଼ା କୃଷି ଏବଂ ତତ୍‌ସଂପର୍କୀୟ ଅନ୍ୟାନ୍ୟ ବହୁକାର୍ଯ୍ୟକ୍ରମ ତଥା ଗୋଷ୍ଠୀ ଉନ୍ନୟନ ସଂପର୍କୀୟ ଆବଶ୍ୟକ ବସ୍ତୁ ମଧ୍ୟ ସାହାଯ୍ୟ ପ୍ରକାରରେ ଯୋଗାଇ ଦେବାର ବ୍ୟବସ୍ଥା ଅଛି ।

ଲାବ୍ ଟୁ ଲ୍ୟାଣ୍ଡ ଯୋଜନାର ପ୍ରଥମ ପର୍ଯ୍ୟାୟରେ ଅର୍ଥାତ୍ ୧୯୮୦ରୁ ୧୯୮୨ ମଧ୍ୟରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ମାଧ୍ୟମରେ ୭୫୦ଟି ପରିବାର ଅନ୍ତର୍ଭୁକ୍ତ ହୋଇଥିଲେ । ସେଥି ମଧ୍ୟରୁ ସମ୍ବଲପୁର ଜିଲ୍ଲାସ୍ଥିତ ଆଞ୍ଚଳିକ ଗବେଷଣା କେନ୍ଦ୍ର ଚିପିଲିମାରେ ୮୦ଟି, ଆଞ୍ଚଳିକ ଗବେଷଣା କେନ୍ଦ୍ର କେନ୍ଦୁଝରରେ ୭୦ଟି, କୋରାପୁଟ ଜିଲ୍ଲାସ୍ଥିତ ଆଞ୍ଚଳିକ ଗବେଷଣା କେନ୍ଦ୍ର ସିମିଳିଗୁଡ଼ା ଠାରେ ୭୦ଟି ଓ ପାର୍ବତ୍ୟ ଅଞ୍ଚଳ ଗବେଷଣା କେନ୍ଦ୍ର ପଟାଙ୍ଗିଠାରେ ୩୦ଟି ପରିବାର ଏହି ଯୋଜନାରେ ନଆଯାଇଥିଲେ । ଏହାଛଡ଼ା ଭୁବନେଶ୍ୱରର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ପିପିଲି ବ୍ଲକର ମଠସାହି ଓ ଦକ୍ଷିଣ ନୂଆଗାଁଠାରେ ୧୨୦ଟି ଓ ନିମାପଡ଼ା ବ୍ଲକର ଭାଣପୁର, ଦଳ ଭାଣପୁର, ଗଡ଼ପଦନପୁର ଓ ବେଲେଶ୍ୱର ଆଦି ଗ୍ରାମରେ ୩୮୦ ପରିବାର ଅନ୍ତର୍ଭୁକ୍ତ ଥିଲେ ।

ଜୁନ୍ ୧୯୮୨ ଠାରୁ ମେ ୧୯୮୪ରେ କାର୍ଯ୍ୟକାରୀ ହୋଇଥିବା ଏହି ଯୋଜନାର ଦ୍ୱିତୀୟ ପର୍ଯ୍ୟାୟରେ ଭାରତ ସରକାରଙ୍କ ତରଫରୁ ବିଶ୍ୱବିଦ୍ୟାଳୟକୁ ଦୁଇଗୁଣରୁ ଅଧିକ ପରିବାର ଅନ୍ତର୍ଭୁକ୍ତ କରିବାର ସୁଯୋଗ ଦିଆଯାଇଥିଲା । ପ୍ରଥମ ପର୍ଯ୍ୟାୟର କାର୍ଯ୍ୟ କୁଶଳତା ଯୋଗୁଁ ଦ୍ୱିତୀୟ ପର୍ଯ୍ୟାୟରେ ଅଧିକ ସଂଖ୍ୟକ ପରିବାରହିଁ ଦିଆଯାଇଛି । ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମରେ ଚିପିଲିମା, କେନ୍ଦୁଝର ଓ ସିମିଳିଗୁଡ଼ାଠାରେ ଥିବା ପ୍ରତ୍ୟେକ କୃଷି ଗବେଷଣା କେନ୍ଦ୍ରକୁ ୨୦୦ କରି, ପଟାଙ୍ଗି ପାର୍ବତ୍ୟ ଗବେଷଣା କେନ୍ଦ୍ର, ଜାତୀୟ ପ୍ରଦର୍ଶନ ଯୋଜନା ବାରିପଦା, କେନ୍ଦୁଝରର କୃଷି ବିଜ୍ଞାନ କେନ୍ଦ୍ର ତଥା ଆଦିବାସୀ ଗବେଷଣା କେନ୍ଦ୍ର, ପ୍ରତ୍ୟେକକୁ ୫୦ ଲେଖାଏ ପରିବାର ଦାୟିତ୍ୱ ଦିଆଯାଇଥିଲା । ଏତଦବ୍ୟତୀତ ପୁରୀ ଜିଲ୍ଲାର ବେଗନିଆଁ ଓ ଟୋଲଗଡ଼ ଅଞ୍ଚଳରେ ୪୫୦ଟି, ବାଲିଅନ୍ତା ବ୍ଲକର ବୁଧିପଡ଼ା ଅଞ୍ଚଳରେ ୩୦୦, ଚନ୍ଦକା ଅଞ୍ଚଳରେ ୩୩୦ ତଥା ପିପିଲି ଅଞ୍ଚଳରେ ୧୨୦ଟି ପରିବାର ଅନ୍ତର୍ଭୁକ୍ତ ଥିଲେ । ତୃତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମ ଯାହାକି ଜୁନ୍ ୧୯୮୪ରୁ ମେ ୧୯୮୬ ମଧ୍ୟରେ କାର୍ଯ୍ୟକାରୀ ହେଉଛି, ସେଥିରେ ବର୍ତ୍ତମାନ ସୁଦ୍ଧା ୨,୫୦୦ ପରିବାର ଅନ୍ତର୍ଭୁକ୍ତ ହୋଇଛନ୍ତି । ବିଶ୍ୱବିଦ୍ୟାଳୟ ସଂପ୍ରସାରଣ କାର୍ଯ୍ୟକ୍ରମ ଦ୍ୱାରା କାର୍ଯ୍ୟକାରୀ ହେଉଥିବା କଟକ ଓ ପୁରୀ ଜିଲ୍ଲାର ବିଭିନ୍ନ ୮ ଗୋଟି ବ୍ଲକରେ ମୋଟ ୧,୨୦୦ଟି ପରିବାର, ବାଲିଆପାଳ, କେନ୍ଦୁଝର ଓ ସିମିଳିଗୁଡ଼ା ସ୍ଥିତ କୃଷି ବିଜ୍ଞାନ କେନ୍ଦ୍ର ପ୍ରତ୍ୟେକଙ୍କୁ ୧୫୦ ଗୋଟି, କେନ୍ଦୁଝର ଏବଂ ଫୁଲବାଣୀସ୍ଥିତ ଆଦିବାସୀ ଗବେଷଣା କେନ୍ଦ୍ର ପ୍ରତ୍ୟେକଙ୍କୁ ୧୦୦ ଗୋଟି, ବାରିପଦା ଏବଂ ଢେଙ୍କାନାଳସ୍ଥିତ ଜାତୀୟ ପ୍ରଦର୍ଶନ ଯୋଜନା ପ୍ରତ୍ୟେକଙ୍କୁ ୫୦ ଗୋଟି, ଆଞ୍ଚଳିକ ଗବେଷଣା କେନ୍ଦ୍ର ଚିପିଲିମାକୁ ୧୦୦ ଗୋଟି, ରାଣୀତାଲ ଜି. ଉଦୟଗିରି ଓ ଭବାନୀ-ପାଟଣା ପ୍ରତ୍ୟେକଙ୍କୁ ୫୦ ଗୋଟି । ବିଶ୍ୱବିଦ୍ୟାଳୟର ସଂପ୍ରସାରଣ ଶିକ୍ଷା ବିଭାଗ ଅଧିନସ୍ଥ ହରିଜନ ଉନ୍ନୟନ ଯୋଜନା ଏବଂ ଡାଲି ଓ ତେଲିବୀଜ ଉନ୍ନୟନ କାର୍ଯ୍ୟକ୍ରମକୁ ଯଥାକ୍ରମେ ୧୫୦ ଓ ୧୦୦ ଗୋଟି ପରିବାରର ଦାୟିତ୍ୱ ଦିଆଯାଇଛି । ଓଡ଼ିଶା ପରି ଏକ ବନ୍ୟା ମରୁଡ଼ି ପ୍ରପୀଡ଼ିତ ଦରିଦ୍ର ରାଜ୍ୟକୁ ଅଧିକ ସଂଖ୍ୟକ ପରିବାର ଏ ଯୋଜନାର ଅନ୍ତର୍ଭୁକ୍ତ ହେବାପାଇଁ ସୁଯୋଗ ଦେବାକୁ ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍‌ଟର ବୈଦ୍ୟନାଥ ମିଶ୍ର ଭାରତୀୟ କୃଷି ଅନୁସନ୍ଧାନ ପରିଷଦ ଦିଲ୍ଲୀକୁ ଅନୁରୋଧ କରିଆସୁଥିଲେ ।

ଦ୍ୱିତୀୟ ପର୍ଯ୍ୟାୟର କାର୍ଯ୍ୟକ୍ରମରେ ୨,୦୦୦ ପରିବାର ମଧ୍ୟରୁ ୮୫୬ ଗୋଟି ଆଦିବାସୀ ଏବଂ ହରିଜନ ପରିବାର ଏବଂ ୧,୩୧୦ ଗୋଟି ଭୂମିହୀନ ତଥା ନାମକୁ ମାତ୍ର ଋଷୀ ପରିବାରକୁ ନିଆଯାଇ-ଥିଲା । ତୃତୀୟ ପର୍ଯ୍ୟାୟରେ ନିଆ ଯାଇଥିବା ପରିବାର ମଧ୍ୟରୁ ଯଥା ସମ୍ଭବ ଅଧିକ ସଂଖ୍ୟକ ଆଦିବାସୀ, ହରିଜନ ତଥା ଭୂମିହୀନ ବା ନାମକୁ ମାତ୍ର ଋଷୀ ପରିବାର ନିଆଯାଇଛନ୍ତି ।

## କାର୍ଯ୍ୟକ୍ରମ

ଲାବ୍ ଟୁ ଲ୍ୟାଣ୍ଡ କାର୍ଯ୍ୟକ୍ରମର ପ୍ରଥମ ପର୍ଯ୍ୟାୟରେ କେବଳ କୃଷି ଉତ୍ପାଦନ ପ୍ରତି ଅଧିକ ଗୁରୁତ୍ୱ ଦିଆଯାଇଥିଲା । ଦ୍ୱିତୀୟ ପର୍ଯ୍ୟାୟରେ କୃଷି ଉତ୍ପାଦନ, ପଶୁପାଳନ ଏବଂ ସାମଗ୍ରିକ ସମ୍ବଳ ବିନିଯୋଗ, ଏହିଭଳି ତିନୋଟି ବିଷୟ ପ୍ରତି ଗୁରୁତ୍ୱ ଦିଆଯାଇଥିଲା । ପିପିଲି ଅଞ୍ଚଳର ଦକ୍ଷିଣ ନୂଆଗାଁରେ ଦୟାନଦୀର ସ୍ରୋତକୁ ବ୍ୟବହାର

କରିବା, ବୃକ୍ଷ ରୋପଣ, ବତକ ପାଳନ, ଗାଉଁଲି ମହିଳାଙ୍କ ପାଇଁ ସିଲେଇ କାର୍ଯ୍ୟକ୍ରମ ଆଦି ନାନା ଯୋଜନା ସାମଗ୍ରିକ ସମନ୍ୱିତ ବିନିଯୋଗ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ।

ଚନ୍ଦକା ଅଞ୍ଚଳର ଭୋଲା ନାମକ କ୍ଷୁଦ୍ର ଗୋପାଳ ଗ୍ରାମରେ କ୍ରମ ଉନ୍ନୟନ ଯୋଜନାରେ ଜର୍ସି ଗାଈ ଏବଂ ବାଛୁରୀମାନଙ୍କର ରୋଗ ନିରାକରଣ, ସୁଷମ ଦାନା ଯୋଗାଣ ଓ ମେଣ୍ଢା ପାଳନ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା । ଚନ୍ଦକା ଓ ସିମିଳିପାଟଣା ଗ୍ରାମରେ ୫୦୦ରୁ ଊର୍ଦ୍ଧ୍ୱ ଛେଳି ଓ ମେଣ୍ଢା ଏବଂ ତତ୍‌ସଂପର୍କୀୟ ଯାବତୀୟ ପାଳନ କୌଶଳ ଯୋଗାଇ ଦିଆଯାଇଛି । ଏ ଅଞ୍ଚଳ ଛଡ଼ା ଦ୍ୱିତୀୟ ପର୍ଯ୍ୟାୟ ଅନ୍ତର୍ଭୁକ୍ତ ସମସ୍ତ ଅଞ୍ଚଳରେ ଉନ୍ନତ କୃଷି ପ୍ରଣାଳୀ ଅବଲମ୍ବନ କରିବା ପାଇଁ ଯାବତୀୟ କୃଷି ସାମଗ୍ରୀ ଏବଂ ଶିକ୍ଷା ଦିଆଯାଇଛି । ଏଥିମଧ୍ୟରେ ବିଭିନ୍ନ ଫସଲ ପାଇଁ ଉନ୍ନତ ବିହନ, ସାର, କୃଷି ଯନ୍ତ୍ରପାତି, ପୋକମରା ଔଷଧ ଆଦି ଯୋଗାଇ ଦିଆଯାଇଥିଲା । ସି. ଆର. ୧୦୦୯, ସି. ଆର ୧୦୧୪, ସି. ଆର ୧୯୦, ଆଇ. ଆର ୩୬, ଯଯାତି ଆଦି ବିଭିନ୍ନ ଅଧିକ ଅମଳକ୍ଷମ ଧାନ ବିହନ ଯୋଗାଇ ଦିଆଯାଇଥିଲା । ସେହିପରି କିଷାନ, ଓ ଏ. କେ. ୧୨–୨୪ ଚିନାବାଦାମ, ଏସ୍ ୫ ହରଡ଼, ଟି ୯ ଓ ସରନା ବିରି, ହାଇବ୍ରିଡ ୧୨–୪ ମୁଗ, କନକ, କାଳିକା ଓ ବିନାୟକ ରାଶି ଆଦି ଚାଷୀମାନଙ୍କୁ ଯୋଗାଇ ଦିଆଯାଇଥିଲା । ଚାକୁଅ ଧାନରେ କାଣ୍ଡବିନ୍ଧା ଓ ଜଳପୋକ ନହେବା ପାଇଁ ଧାନ ଚଲିର ଚେରକୁ "ଡାନୁସବାନ୍" ନାମକ ଔଷଧରେ ବୁଡ଼ାଇବା, ବିଭିନ୍ନ ରୋଗ ଓ ପୋକ ପାଇଁ ଆବଶ୍ୟକୀୟ ଔଷଧ ନିର୍ଦ୍ଦିଷ୍ଟ ପରିମାଣ ଓ ଉପାୟରେ ପକାଇବା ଆଦି ଶିକ୍ଷା ଦିଆଯାଇ ଥିଲା । ଚାଷୀମାନଙ୍କ କ୍ଷେତ୍ରରେ ଉନ୍ନତ ପ୍ରଣାଳୀରେ ଚାଷକରି ଦେଖାଇବା ସଙ୍ଗେ ସଙ୍ଗେ, ବିଭିନ୍ନ ସମୟରେ ଉନ୍ନତ ପ୍ରଣାଳୀ ସମ୍ବନ୍ଧରେ ବୈଜ୍ଞାନିକମାନଙ୍କଦ୍ୱାରା ଚାଷୀମାନଙ୍କୁ ତାଲିମ ଦିଆଯାଇଥିଲା । ଏହାଛଡ଼ା କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ବିଷୟରେ ପୁସ୍ତିକାମାନ ଛପାଇ ଚାଷୀମାନଙ୍କୁ ଯୋଗାଇ ଦିଆଯାଇଥିଲା ।

## କାର୍ଯ୍ୟକ୍ରମର ସଫଳତା

ଲ୍ୟାବ୍ ଟୁ ଲ୍ୟାଣ୍ଡ କାର୍ଯ୍ୟକ୍ରମ ମୁଖ୍ୟତଃ ଏକ ଶିକ୍ଷା ମୂଳକ ଯୋଜନା । କୃଷି, ପଶୁପାଳନ ଏବଂ ଗ୍ରାମ୍ୟ ଅଞ୍ଚଳର ସମସ୍ତ ଧନ୍ଦାମୂଳକ ବ୍ୟବସାୟରେ ଲୋକମାନଙ୍କୁ ଉନ୍ନତ ଓ ବୈଜ୍ଞାନିକ ପଦ୍ଧତି ଶିଖାଇବା ଏହାର ମୁଖ୍ୟ ଉଦ୍ଦେଶ୍ୟ । ଦରିଦ୍ର ଏବଂ ଭୂମିହୀନ ଲୋକେ ଯେଉଁମାନେକି କେବଳ ଅର୍ଥାଭାବରୁ ଉନ୍ନତ ପ୍ରଣାଳୀ ବ୍ୟବହାର କରିପାରୁନାହାନ୍ତି, ସେମାନଙ୍କୁ ନିଜ କ୍ଷେତରେ ଉନ୍ନତ ପ୍ରଣାଳୀ ପ୍ରଦର୍ଶନ କରାଇବା ପାଇଁ ସାମାନ୍ୟ ଅର୍ଥ ବିନିମୟରେ କେତେକ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଇ ଦିଆଯାଏ । ତେଣୁ ପ୍ରତ୍ୟେକ ପର୍ଯ୍ୟାୟରେ ମାତ୍ର ଦୁଇ ବର୍ଷର ପ୍ରଚେଷ୍ଟା ଓ ଶିକ୍ଷା ଦ୍ୱାରା ସେର ବା ମହଣ ଆକାରରେ ବହୁତ କିଛି ଆଶା କରାଯାଇ ନ ପାରେ । ତଥାପି ଉନ୍ନତିକୁ କୌଣସି ନା କୌଣସି ମାପ କାଠିରେ ମାପିବାକୁ ହେବ । ଦ୍ୱିତୀୟ ପର୍ଯ୍ୟାୟରେ କୃଷି ଓ ପଶୁପାଳନ କ୍ଷେତ୍ରରେ ଯାହା ଉନ୍ନତି ଲକ୍ଷ୍ୟ କରାଯାଇଛି, ତାହାର ଗୋଟିଏ ମୋଟାମୋଟି ଚିତ୍ର ଦିଆଯାଇଛି । ଧାନ ଯେଉଁଠି ହେକ୍ଟର ପିଛା ହାରାହାରି ୧୬ କୁଇଣ୍ଟାଲ ଫଳୁଥିଲା, ଉନ୍ନତ କିସମ ଓ ପ୍ରଣାଳୀ ବ୍ୟବହାର କଲା ଫଳରେ ତାହା ହେକ୍ଟର ପିଛା ହାରାହାରି ୨୫ କୁଇଣ୍ଟାଲକୁ ବୃଦ୍ଧି ପାଇଛି । ବୋଲଗଡ଼ ଅଞ୍ଚଳର ବିକଶଗରୁଣି ଗ୍ରାମରେ ଯେଉଁଠି କେବେ ଗହମ ଚାଷ ହୋଇ ନ ଥିଲା, ସେଠାରେ ହେକ୍ଟର ପିଛା ହାରାହାରି ୧୨ କୁଇଣ୍ଟାଲ ଗହମ ଫଳିଛି । ସେହିପରି ବେଗୁନିଆ ଅଞ୍ଚଳର 'ହଜ' ଗ୍ରାମରେ ଯେଉଁଠି ପୂର୍ବରୁ ଆଳୁ ହେକ୍ଟର ପିଛା ହାରାହାରି ୮୦ କୁଇଣ୍ଟାଲ ଫଳୁଥିଲା, ସେଠାରେ ତାହା ହାରାହାରି ୧୨୫ କୁଇଣ୍ଟାଲକୁ ବୃଦ୍ଧି ପାଇଛି । ଏହାଛଡ଼ା ବିଭିନ୍ନ ଅଞ୍ଚଳରେ ରାଶି, ମୁଗ, ବିରି ଏବଂ ଚିନାବାଦାମର ଉନ୍ନତ କିସମ ଓ ଚାଷ ପ୍ରଣାଳୀ ଗ୍ରହଣ କରାଗଲା ଫଳରେ ପୂର୍ବରୁ ମିଳୁଥିବା ଫସଲ ଅପେକ୍ଷା ହେକ୍ଟର ପିଛା ପ୍ରାୟ ଦେଢ଼ଗୁଣରୁ ଦୁଇଗୁଣ ଅଧିକ ଅମଳ ମିଳିଛି । ଚନ୍ଦକା, ଭୋଲା ଓ ସିମିଳିପାଟଣା ଆଦି ପଶୁପାଳନ ହାତକୁ ନିଆଯାଇଥିବା ଅଞ୍ଚଳରେ ଚାଷୀମାନେ ସୁଷମଖାଦ୍ୟ, କୃମି ନାଶକ ଔଷଧ, ରୋଗ ପ୍ରତିଷେଧକ ଟୀକା ବିଷୟରେ ଅବହିତ ହୋଇଛନ୍ତି । କଳା ବଙ୍ଗଳା ଜାତୀୟ ଛେଳିଙ୍କଠାରୁ ଲୋକମାନେ ଦୁଇ ବା କେତେକ କ୍ଷେତ୍ରରେ ତିନୋଟି ଲେଖାଏ ଛେଳିଛୁଆ ପାଉଛନ୍ତି ।

## ଯୋଗାଯୋଗ

ଲ୍ୟାବ୍ ଟୁ ଲ୍ୟାଣ୍ଡ ଯୋଜନା ଗ୍ରାମାଞ୍ଚଳର ଲୋକମାନଙ୍କ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛି । ଏହା ଫଳରେ ବହୁତ ସରକାରୀ, ବେସରକାରୀ ଓ ସ୍ୱୟଂ ଚାଳିତ ସଂସ୍ଥାମାନଙ୍କ ସହ ସମ୍ପର୍କ ରଖିବା ଆବଶ୍ୟକ ପଡ଼ିଥାଏ । କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଅଧୀନରେ କାର୍ଯ୍ୟକାରୀ ହେଉଥିବା ଲ୍ୟାବ୍ ଟୁ ଲ୍ୟାଣ୍ଡ୍ ଯୋଜନାରେ ଏହିପରି ବହୁ ଅନୁଷ୍ଠାନମାନଙ୍କ ସହିତ କାର୍ଯ୍ୟକରି ଆଶାତୀତ ସହଯୋଗ ପାଇଛି । ସରକାରଙ୍କ କୃଷିବିଭାଗ, ପଶୁପାଳନ, ମତ୍ସ୍ୟଚାଷ ବ୍ୟତୀତ, ଜିଲ୍ଲା ଓ ବ୍ଲକ ମହକୁମା, ଉଠା-ଜଳସେଚନ, ବିଦ୍ୟୁତ୍‌ବୋର୍ଡ, ଆଗ୍ରୋ ଇଣ୍ଡଷ୍ଟ୍ରିଜ୍, ମାର୍କେଟିଂ ଫେଡ଼େରେସନ, ଡି. ଆର. ଡି. ଏ. ଇତ୍ୟାଦି ନାନା ଅନୁଷ୍ଠାନ ସହିତ ଯୋଗାଯୋଗ କାଏମ ରହିଛି ।

ସରକାର ବା ବିଶ୍ୱବିଦ୍ୟାଳୟ ତରଫରୁ ଗ୍ରାମାଞ୍ଚଳରେ ଯେତେ କାର୍ଯ୍ୟ କରାଗଲେ ମଧ୍ୟ ଗ୍ରାମ ଲୋକଙ୍କର ପୂର୍ଣ୍ଣମାତ୍ରାରେ ସହଯୋଗ ନ ମିଳିଲେ କୌଣସି କାର୍ଯ୍ୟକ୍ରମ ଉପଯୁକ୍ତଭାବେ କାର୍ଯ୍ୟକାରୀ ହୋଇ ପାରିବ ନାହିଁ । ଅନୁଭୂତିରୁ ଦେଖାଯାଇଛି ଯେ, ଯୋଜନା କର୍ମଚାରୀଙ୍କ ଆଗରେ ଯେଉଁ ଅଞ୍ଚଳର ଲୋକମାନେ ସେମାନଙ୍କର ସମସ୍ୟାକୁ ଉପସ୍ଥାପନ କରିଛନ୍ତି, ସେମାନଙ୍କର ସମାଧାନ ସେତେ ଚଞ୍ଚଳ କରାଯାଇଛି । ଏହାହିଁ ଗ୍ରାମାଞ୍ଚଳର ଏକ ଉନ୍ନତିର ମୁଖ୍ୟ ସୋପାନ । ଲ୍ୟାବ୍ ଟୁ ଲ୍ୟାଣ୍ଡ ଯୋଜନାର ପ୍ରଥମ ଓ ଦ୍ୱିତୀୟ ପର୍ଯ୍ୟାୟ କ୍ରମରେ ଯେତିକି ଜନ ସହଯୋଗ ମିଳିଛି, ତୃତୀୟ ପର୍ଯ୍ୟାୟରେ ତାହାଠାରୁ ଅଧିକ ସହଯୋଗ ମିଳିଲେ ଏହି ଯୋଜନା ସଫଳ ହେବା ସଙ୍ଗେ ସଙ୍ଗେ ଲୋକଙ୍କର ଆଶାନୁରୂପ ଉନ୍ନତି ହୋଇପାରିବ ।

ସମ୍ପ୍ରସାରଣ ଶିକ୍ଷା ବିଭାଗ,
ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର ।



କେନ୍ଦ୍ରମନ୍ତ୍ରୀ ବି. ଶଙ୍କରାନନ୍ଦଙ୍କ
ସହିତ ମୁଖ୍ୟମନ୍ତ୍ରୀ.....

ରାଜ୍ୟପାଳ
ମନ୍ତ୍ରୀ ମାନଙ୍କୁ
ଶପଥ ପାଠ
କରାଉଛନ୍ତି ।





ଶପଥ ଗ୍ରହଣ
ଉତ୍ସବରେ





"କୌଣସି କାମ
ଛୋଟ କାମ ନୁହେଁ"

ଆମରି ଆନନ୍ଦ ........
ଆମେ ଗଢ଼ୁଛୁ ଏ ଦେଶ ।







ଶ୍ରମ ଏବ ଉପୂରେ ......





ଶାସନ ସଚିବ ମାନଙ୍କ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ।
C.M. ADDRESSING A MEETING OF THE SECRETARIES.



ପଣ୍ଡିତ ନୀଳକଣ୍ଠଦାଶ ଅଖଣ୍ଡ ଜ୍ୟୋତି ପରିକ୍ରମା ମହୋତ୍ସବ ଉଦ୍‌ଘାଟନରେ ମୁଖ୍ୟମନ୍ତ୍ରୀ

C.M. INAUGURATING AKHANDA JYOTI OF
PANDIT NILAKANTHA DASH.



# ଓଡ଼ିଶାରେ ସାମାଜିକ ଓ ଧର୍ମୀୟ ସଂସ୍କାର ଆନ୍ଦୋଳନ

ଡକ୍ଟର ଗଙ୍ଗାଧର ବଳ

ଓଡ଼ିଶାର ସମାଜ ଓ ଧର୍ମ କ୍ଷେତ୍ରରେ ସପ୍ତମ–ଅଷ୍ଟମ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ସଂଘଟିତ ହୋଇଥିବା ଆନ୍ଦୋଳନ ସମ୍ପର୍କରେ ଆଲୋଚନା କରିବା ଅବସରରେ ପ୍ରଥମେ ତତ୍କାଳୀନ ଓଡ଼ିଆ ସମାଜର ସ୍ଥିତି ଓ ସ୍ୱରୂପ ଏବଂ ପ୍ରଚଳିତ ଧର୍ମଧାରା ସମ୍ପର୍କରେ ପ୍ରଶ୍ନ ଉଠିବା ସ୍ୱାଭାବିକ । ପୁଣି ସେପ୍ରକାର ସମାଜ ଏବଂ ପ୍ରଚଳିତ ଧର୍ମ କ୍ଷେତ୍ରରେ ଯଦି କିଛି ପରିବର୍ତ୍ତନ ବା ସଂସ୍କାର ସାଧିତ ହୋଇଥାଏ, ତା'ହେଲେ ତା'ର ନେତୃତ୍ୱ ନେଇଥିଲା କିଏ ? ଏ ହେଉଛି ଦ୍ୱିତୀୟ ପ୍ରଶ୍ନ ।

ମାନବ ସଭ୍ୟତା ଓ ସଂସ୍କୃତିର ଉନ୍ମେଷ କାଳରୁ ମଣିଷ ଧର୍ମ ସମ୍ପର୍କରେ ଯେତେଦୂର ସଚେତନ, ସମାଜ ଏବଂ ସେଠାରେ ଦ୍ରୁତ ବା ବିଳମ୍ବିତ ଲୟରେ ସଂଘଟିତ ହେଉଥିବା ପରିବର୍ତ୍ତନ ବା ସଂସ୍କାର ସମ୍ପର୍କରେ ସେତେଦୂର ସଚେତନ ନୁହେ । ଏହାର ଅର୍ଥ ନୁହେଁ ଯେ ସମାଜ ନ ଥିଲା, ସେଠାରେ ପରିବର୍ତ୍ତନ ବା ସଂସ୍କାର ସଂଘଟିତ ହେଉ ନ ଥିଲା । ଆଜିର ମଣିଷ ଯେପରି ସମାଜର ପରିବର୍ତ୍ତନ ତଥା ସଂସ୍କାର ସମ୍ପର୍କରେ ସଚେତନ, ଆଧୁନିକ ଅର୍ଥରେ ସେ ପ୍ରକାର ସମାଜ ତଥା ସଂସ୍କାର ସଚେତନତା ସୁଦୂର ଅତୀତର ମଣିଷ ଚିତ୍ତରେ ଜାତ ହୋଇ ନ ଥିଲା; ଅଥଚ ସମାଜ ଓ ଧର୍ମର ବିବର୍ତ୍ତନ ଧାରାରେ ଯେଉଁ ପରିବର୍ତ୍ତନ ବା ସଂସ୍କାର ସାଧିତ ହେଉଥିଲା, ମଣିଷ ତାର ଫଳ ଜୀବନରେ ଭୋଗୁଥିଲା ।

ଆଜି ଓଡ଼ିଶା କହିଲେ ଐତିହାସିକ ଓ ଭୌଗୋଳିକ ଦୃଷ୍ଟିରୁ ଯେଉଁ ଭୂଖଣ୍ଡର ଚିତ୍ର ଆମ ଆଗରେ ନାଚିଯାଏ, ତାହା ମୂଳତଃ ସମ୍ଭବ ହୋଇଛି ମୋଗଲମାନଙ୍କଠାରୁ । ଐରରାଜ ମହାମେଘବାହାନ ଖାରବେଳଙ୍କଠାରୁ ସୂର୍ଯ୍ୟବଂଶ ରାଜତ୍ୱର ଅନ୍ତ ଅବଧି ଏହି ଭୂଖଣ୍ଡର ସୀମା କେତେବେଳେ ସଙ୍କୁଚିତ ହୋଇଛି, ପୁଣି କେତେବେଳେ ବିସ୍ତୃତ ହୋଇଛି । ପୁଣି କଳିଙ୍ଗ, ଓଡ୍ର, କୋଶଳ, ଉତ୍କଳର ଏହି ବିଭିନ୍ନ ଖଣ୍ଡମାନ କେତେବେଳେ ପରସ୍ପରଠାରୁ ସ୍ୱତନ୍ତ୍ର ଅସ୍ତିତ୍ୱରେ ଚିହ୍ନିତ ହୋଇଛନ୍ତି ତ କେତେବେଳେ ଏକତ୍ର ହୋଇ ସାମ୍ରାଜ୍ୟର ଗୌରବ ଅର୍ଜ୍ଜନ କରିଛନ୍ତି ।

## ଓଡ଼ିଶାର ଧର୍ମ

ଖ୍ରୀଷ୍ଟପୂର୍ବ କାଳର ଅଶୋକଙ୍କଠାରୁ ଆରମ୍ଭକରି ସୂର୍ଯ୍ୟବଂଶୀ ରାଜତ୍ୱକାଳ ଶେଷ ପର୍ଯ୍ୟନ୍ତ ଓଡ଼ିଶାରେ ନାନା ଧର୍ମର ବନ୍ୟା ପ୍ରବାହିତ ହୋଇଛି, କିନ୍ତୁ ତନ୍ମଧ୍ୟରୁ ଓଡ଼ିଶାର ଜନ ଜୀବନ ଏବଂ ଶିଳ୍ପ, ସ୍ଥାପତ୍ୟ ଓ ସାହିତ୍ୟରେ ଯେଉଁଗୁଡ଼ିକ କାଳୋପଯୋଗୀ ମୁଦ୍ରା ଅଙ୍କନକରି ଯାଇଛନ୍ତି ସେଗୁଡ଼ିକ ହେଲା, ବୌଦ୍ଧ, ଜୈନ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମ ଏବଂ ଓଡ଼ିଶାର ଜାତୀୟ ଜୀବନ, ଧର୍ମ ଓ ସଂସ୍କୃତିର ସାର୍ବଜନୀନ ତଥା କାଳଜୟୀ ପ୍ରତୀକ ତଥା ଅନୁଷ୍ଠାନ ଜଗନ୍ନାଥଙ୍କଠାରେ ନିଜ ନିଜର କିଛି କିଛି ସଙ୍କେତ ଛାଡ଼ିଦେଇ ତାଙ୍କଠାରେ ଲୀନ ହୋଇ ସତେ ଯେପରି ନିଃଶ୍ୱାସ ମାରିଛନ୍ତି ।

## ବୌଦ୍ଧଧର୍ମ

ଖ୍ରୀଷ୍ଟପର ପ୍ରଥମ ଶତାବ୍ଦୀରେ ଓଡ଼ିଶାରେ ପ୍ରଚଳିତ ବୌଦ୍ଧ ଧର୍ମର ଦୁଇଟି ଶାଖା ହୀନଯାନ ଓ ମହାଯାନ ପରସ୍ପର ବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି । ମହାଯାନୀମାନେ ବୁଦ୍ଧଙ୍କୁ ଈଶ୍ୱର ଜ୍ଞାନକରି ତାଙ୍କର ମୂର୍ତ୍ତି ପୂଜାର ପ୍ରବର୍ତ୍ତନ କରୁଥିବା ସ୍ଥଳେ ହୀନଯାନୀମାନେ ମୂର୍ତ୍ତିପୂଜା ପ୍ରତି ଘୃଣା ପ୍ରକାଶ କରନ୍ତି । ବ୍ରାହ୍ମଣ୍ୟ ଧର୍ମପରି ମହାଯାନୀମାନେ ତାଙ୍କର ଦେବତାର କଳ୍ପନା କରନ୍ତି ।

ବାଲେଶ୍ୱର ଜିଲ୍ଲାର ଅଯୋଧ୍ୟାଠାରୁ ପୁରୀଜିଲ୍ଲାର ବାଣପୁର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ବହୁ ବୌଦ୍ଧକୀର୍ତ୍ତି ଓ ବୌଦ୍ଧ ତାନ୍ତ୍ରୀକ ମୂର୍ତ୍ତି ପରିଲକ୍ଷିତ ହେଉଥିବାରୁ ଏହି ବିସ୍ତୃତ ଅଞ୍ଚଳରେ ମହାଯାନୀ ବୌଦ୍ଧଶାଖାର ପ୍ରଭାବ ଅନୁଭୂତ ହୁଏ (୧) । ସପ୍ତମ ଶତାବ୍ଦୀରେ ମହାଯାନ ତାନ୍ତ୍ରିକ ସମ୍ପ୍ରଦାୟର ବିଶେଷ ପ୍ରସାର ଘଟିଥିଲା ଏବଂ ବୌଦ୍ଧଧର୍ମ, ତନ୍ତ୍ର, ଯୋଗଶିକ୍ଷାର ପ୍ରଧାନ କେନ୍ଦ୍ରସ୍ଥଳ ହୋଇଥିଲା କଟକଜିଲ୍ଲାର ରତ୍ନଗିରି ବିହାର (୨) । ଆସାମରୁ ଆସିଥିବା ପ୍ରାଥମିକ ଭୌମ ରାଜାମାନେ ଖ୍ରୀ: ସପ୍ତମରେ ବୌଦ୍ଧ ଥିଲେ ମଧ୍ୟ ପରବର୍ତ୍ତୀ ରାଜାମାନେ ବ୍ରାହ୍ମଣ୍ୟ ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ଭୌମମାନେ ପାଶୁପତ ସମ୍ପ୍ରଦାୟର ଉନ୍ନତି ସାଧନ କରିଥିଲେ । ଭୁବନେଶ୍ୱରର ପ୍ରାଚୀନ ମନ୍ଦିରରେ ଲକୁଲୀମୂର୍ତ୍ତି ପରିଲକ୍ଷିତ ହୁଏ । ପାଶୁପତ ମତ ହେତୁ ଭୁବନେଶ୍ୱରରେ ମନ୍ଦିର ସଂଖ୍ୟା ବୃଦ୍ଧିଲାଭ କରିଥିଲା । କାରଣ ପାଶୁପତମାନେ ସେମାନଙ୍କ ମୃତଗୁରୁଙ୍କ ପ୍ରତିନିଧି ସ୍ୱରୂପ ଲିଙ୍ଗ ସ୍ଥାପନ କରି ତା ଉପରେ ମନ୍ଦିର ଗଠନ କରୁଥିଲେ ।

ସୋମବଂଶୀ ରାଜାମାନେ ଶୈବ ଧର୍ମର ପୃଷ୍ଠପୋଷକ ଥିଲେ ଏବଂ ବ୍ରାହ୍ମଣ୍ୟ ଧର୍ମର ପ୍ରଭାବରେ ପ୍ରଭାବିତ ହୋଇ ଜଗନ୍ନାଥ ଓ ଲିଙ୍ଗରାଜ ପ୍ରଭୃତି ବ୍ରାହ୍ମଣ୍ୟଧର୍ମ ପ୍ରଧାନ ମନ୍ଦିରମାନ ନିର୍ମାଣ କରିଥିଲେ । ସପ୍ତମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟ ବୌଦ୍ଧଧର୍ମ ବିପକ୍ଷରେ ପ୍ରଚଣ୍ଡ ଅଭିଯାନ ଆରମ୍ଭକରି ଥିବାରୁ ଏବଂ ରାଜାମାନେ ବ୍ରାହ୍ମଣ୍ୟଧର୍ମର ପୃଷ୍ଠ ପୋଷକତା କରିବାରୁ ଶୈବ ଓ ବୈଷ୍ଣବଧର୍ମ ସହ ବୌଦ୍ଧଧର୍ମର ସଂଘର୍ଷ ଦେଖାଗଲା । ମହାଯାନ ଶାଖାର ଯୋଗାଚାରବାଦ ରୂପ ପରିବର୍ତ୍ତନ କରି ତନ୍ତ୍ରଯାନରେ ପରିଣତ ହେଲା ଏବଂ ତନ୍ତ୍ରଯାନର (୩) ପରିଣତି ଘଟିଲା ବଜ୍ରଯାନରେ ।

ଓଡ଼ିଶାରେ ଏହି ବଜ୍ରଯାନର ବହୁଳ ପ୍ରଚାର ଘଟିଥିଲା । କଥିତ ଅଛି ରାଜା ଇନ୍ଦ୍ରଭୂତି ଏବଂ ତାଙ୍କର କନ୍ୟା ଭଗବତୀ ଯଥାକ୍ରମେ ଜ୍ଞାନସିଦ୍ଧି ଓ ଅଦ୍ୱୟସିଦ୍ଧି ନାମକ ଦୁଇଟି ବଜ୍ରଯାନୀ ଗ୍ରନ୍ଥ ରଚନା କରିଥିଲେ । ଚର୍ଯ୍ୟାଗୀତି ବା ଦର୍ଶନମୂଳକ ଗୁହ୍ୟ ରଚନା କରିଥିଲେ । ଚର୍ଯ୍ୟାଗୀତି ବା ଦୋହାକାର ସରହପାଦ ବୁଦ୍ଧ କପାଳତନ୍ତ୍ର ଏବଂ କମ୍ବଳପା ପଦ୍ମବଜ୍ର ରଚନା କରିଥିଲେ । କାହ୍ନୁପା, କୃଷ୍ଣାଚାର୍ଯ୍ୟପାଦ ପ୍ରଭୃତି ଅନ୍ୟ କେତେକ ଚର୍ଯ୍ୟାଗୀତିକାର ବହୁ ବୌଦ୍ଧତନ୍ତ୍ର ଗ୍ରନ୍ଥ ରଚନା କରିଥିଲେ । ବଜ୍ରଯାନୀ ସାଧକମାନେ ବାହ୍ୟତଃ ପଞ୍ଚଧ୍ୟାନୀ ବୁଦ୍ଧଙ୍କର ପୂଜା (ଆରାଧନା) କରୁଥିଲେ ମଧ୍ୟ ସାଧନାରେ ଶୂନ୍ୟର ଉପାସନା ଓ ଶୂନ୍ୟବାଦକୁ ଉଚ୍ଚସ୍ଥାନ ଦେଉଥିଲେ ।

ତା'ପରେ ତାନ୍ତ୍ରିକ ବୌଦ୍ଧଧର୍ମରେ 'ସହଜଯାନ' ନାମକ ଏକ ମତବାଦର ସୃଷ୍ଟି ହେଲା, ଯାର ପ୍ରବର୍ତ୍ତିକା ହେଉଛନ୍ତି ଇନ୍ଦ୍ରଭୂତିଙ୍କ ଭଗିନୀ ଲକ୍ଷ୍ମୀଙ୍କରା । ସେ ତାଙ୍କର ଏହି ମତବାଦର ଶରୀର ବା କାୟାସାଧନା ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି ଏବଂ ମୂର୍ତ୍ତିପୂଜାର ବିରୋଧ କରିଛନ୍ତି । ତାଙ୍କ ଦୃଷ୍ଟିରେ ମଣିଷର ଶରୀର ବିଶ୍ୱର ପ୍ରତୀକ ଏବଂ ଏହା ଦେବାଦେବୀଙ୍କର ଅଧିଷ୍ଠାନ କ୍ଷେତ୍ର ହୋଇଥିବାରୁ ଏହା ଅତି ପବିତ୍ର । ବୋଧିସତ୍ତ୍ୱ ବା ବୋଧିଚିତ୍ତ ତାଙ୍କ ଦର୍ଶନର ମୂଳତତ୍ତ୍ୱ । ଶରୀର ସାଧନାଦ୍ୱାରା ବୋଧିଚିତ୍ତର ଅବଧୂତି ମାର୍ଗରେ ଜ୍ଞାନ ବା ଶୂନ୍ୟ ସହ କରୁଣା ବା ପ୍ରଜ୍ଞାସହ ଉପାୟର ମିଳନ ଘଟିଲେ ସାଧକ ମହାସୁଖ ବା ସହଜ ସୁଖ ଲାଭ କରେ । ସହଜଯାନର ସାଧକମାନେ ଲୋକଭାଷା ମାଧ୍ୟମରେ ନିଜ ମତରେ ପ୍ରଚାର କରିଥିବାରୁ ସମାଜ ଓ ସାହିତ୍ୟରେ ତାର ପ୍ରଭାବ ପରିଲକ୍ଷିତ ହୋଇଥିଲା । ଯା ଫଳରେ ଓଡ୍ରୀ ମାଗଧୀ ଅପଭ୍ରଂଶ ଭାଷାରେ ବିପୁଳ ଚର୍ଯ୍ୟାଗୀତିକାର ସୃଷ୍ଟି ହୋଇପାରିଛି (୪) ।

## ଶାକ୍ତଧର୍ମ

ଓଡ଼ିଶାରେ ଶାକ୍ତଧର୍ମ ପାଶୁପତ ଧର୍ମସହ ମିଶିଗଲେ ମଧ୍ୟ ଇତିହାସର ପ୍ରଥମ ପର୍ଯ୍ୟାୟରେ ଏହା ଏକ ସ୍ୱତନ୍ତ୍ର ମତବାଦ (ଧର୍ମ) ଭାବରେ ପ୍ରତିଷ୍ଠିତ ଥିଲା । ଯାଜପୁରରେ ବିରଜା, ଭୁବନେଶ୍ୱରର ବୈତାଳ ମନ୍ଦିର, ସପ୍ତମାତୃକା, (ଶାକ୍ତଧର୍ମର ଅନ୍ୟରୂପ. ବୈତାଳ, ମୁକ୍ତେଶ୍ୱର ଓ ପର୍ଶୁରାମେଶ୍ୱର ମନ୍ଦିରରେ) ପ୍ରାଚୀ ଉପତ୍ୟକାର ବରାହ ମନ୍ଦିର, କାକଟପୁରର ମଙ୍ଗଳା, ବାଙ୍କୀର ଚର୍ଚ୍ଚିକା, ବାଣପୁରର ଭଗବତୀ, ଝଙ୍କଡ଼ର ଶାରଳା, କୋଣାର୍କର ରାମଚଣ୍ଡୀ ଏବଂ ସମ୍ବଲପୁରର ସମଲେଶ୍ୱରୀ, ଓଡ଼ିଶାର ପ୍ରସିଦ୍ଧ ଶାକ୍ତ-ଦେବୀ ତଥା ପୀଠ । ଗୁପ୍ତରାଜାଙ୍କ ରାଜତ୍ୱ ପୂର୍ବରୁ ବିରଜା କ୍ଷେତ୍ର ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲା । ଗୁପ୍ତକାଳରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍‌ଥାନ ହେତୁ ବୌଦ୍ଧ ପ୍ରଭାବ ଦୂରୀଭୂତ ହେଲା ଏବଂ ବ୍ରାହ୍ମଣ୍ୟ ଧର୍ମର ମନ୍ଦିର ଭାବରେ ପ୍ରତିଷ୍ଠିତ ଲାଭ କଲା । ଭୌମରାଜାଙ୍କ କାଳରେ ତାନ୍ତ୍ରିକ ବୌଦ୍ଧ ଧର୍ମର ପ୍ରଭାବ ଲକ୍ଷିତ ହୋଇଛି । ଏହାଙ୍କ କାଳରେ ବୌଦ୍ଧ, ଶୈବ, ଶାକ୍ତ ଓ ତନ୍ତ୍ର ଧର୍ମର ଅଦ୍ଭୁତ ମିଶ୍ରଣ ଘଟିଯାଇଛି ଯାର ପ୍ରଭାବ ବିରଜାଙ୍କ ଉପରେ ଲକ୍ଷିତ ହୁଏ । ଶୈବ କ୍ଷେତ୍ର ଭୁବନେଶ୍ୱରରେ ଭୌମକାଳରେ ବହୁଶାକ୍ତ ମନ୍ଦିର ନିର୍ମିତ ହୋଇଥିଲା ଯେଉଁ ଗୁଡ଼ିକରେ ଶୈବ ଓ ତାନ୍ତ୍ରିକ ବୌଦ୍ଧ ଧର୍ମର ସଂକେତ ପରିଲକ୍ଷିତ ହୁଏ । ବୈତାଳ ମନ୍ଦିରରେ ଶାକ୍ତମୂର୍ତ୍ତି ସହ ଶୈବ ଓ ତାନ୍ତ୍ରିକ ମୂର୍ତ୍ତି ଦେଖାଯାଆନ୍ତି । ବୈତାଳ ମନ୍ଦିରରେ ଚାମୁଣ୍ଡା ଓ ମହିଷମର୍ଦ୍ଦିନୀ ମୂର୍ତ୍ତି ପରି ଖିଚିଂରେ ଚାମୁଣ୍ଡା ମୂର୍ତ୍ତି ଲକ୍ଷିତ ହୁଏ । ଗଙ୍ଗ ସମ୍ରାଟ ଚୋଡ଼ଗଙ୍ଗ ଦେବ ଶକ୍ତି ଉପାସନାକୁ ସମର୍ଥନ କରିନଥିଲେ । ଅନନ୍ତ ବାସୁଦେବ ମୂର୍ତ୍ତି ଓ ମନ୍ଦିର ନିର୍ମାଣ ପରେ ଯେଉଁ ମନ୍ଦିର ଗୁଡ଼ିକ ନିର୍ମିତ ହୋଇଥିଲା, ସେଗୁଡ଼ିକରେ ପ୍ରତ୍ୟେକ ଦେବମୂର୍ତ୍ତି ସହ ସେମାନଙ୍କର ଶକ୍ତିର କଳ୍ପନା କରାଯାଇଥିଲା (୫) ।

ସୋମବଂଶୀ ରାଜାମାନେ ଥିଲେ ଶୈବ । ଗଙ୍ଗବଂଶୀ ରାଜାମାନେ ମୂଳରୁ ଶୈବଥିଲେ ମଧ୍ୟ ଓଡ଼ିଶା ଅଧିକାର ପରେ ବୈଷ୍ଣବଧର୍ମ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରିଥିଲେ । ଉଭୟ ସୋମବଂଶୀ ଓ ଗଙ୍ଗବଂଶୀ ରାଜାଙ୍କର ଓଡ଼ିଶା ସିଂହାସନରେ ଆଇନଗତ (ପରମ୍ପରାଗତ) ଦାବୀ ନଥିବାରୁ ସେମାନେ ଜଗନ୍ନାଥ ମନ୍ଦିର ନିର୍ମାଣ କରି ଓଡ଼ିଶାର ଲୋକଚିତ୍ତ ଆକର୍ଷଣ କରିଥିଲେ । ଜଗନ୍ନାଥ ତତ୍ତ୍ୱ ଓ କ୍ଷେତ୍ରରେ ଯେଉଁ ସାର୍ବଜନୀନ ସମନ୍ୱୟବାଦୀ ଦୃଷ୍ଟିଭଙ୍ଗୀ ପରିଲକ୍ଷିତ ହୋଇଥିଲା ତାର କ୍ଷେତ୍ରପ୍ରସ୍ତୁତ କରିଥିଲେ ସୋମବଂଶୀ ଓ ଗଙ୍ଗବଂଶୀ ରାଜାମାନେ । ସୋମବଂଶୀ ହିନ୍ଦୁ ରାଜାମାନଙ୍କର ପରିବାରର ଅଧିଷ୍ଠାତ୍ରୀ ଦେବତା ସତ୍ତ୍ୱେ ସେମାନେ ଅନ୍ୟ ଦେବତାଙ୍କର ଉପାସନା କରିବା ଦ୍ୱାରା ବିଭିନ୍ନ ଧର୍ମଗତ ଓ ସଂପ୍ରଦାୟର ପୃଷ୍ଠପୋଷକତା କରିବା ସଙ୍ଗେ ସଙ୍ଗେ ସହିଷ୍ଣୁତା ପ୍ରଦର୍ଶନ କରୁଥିଲେ । ସେମାନେ ପୁରୀରେ ବୈଷ୍ଣବୀୟ ଜଗନ୍ନାଥ ମନ୍ଦିରର ପୁନରଭ୍ୟୁତ୍‌ଥାନ ଘଟାଇ ଧର୍ମ କ୍ଷେତ୍ରରେ ନିଜର ଉଦାର ତଥା ସାର୍ବଜନୀନ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥିଲେ । ଗଙ୍ଗରାଜାମାନେ ବୈଷ୍ଣବଧର୍ମର ପୃଷ୍ଠପୋଷକତା କଲେ ମଧ୍ୟ ଶିବଙ୍କ ପ୍ରତି ଭକ୍ତି ଓ ସମ୍ମାନ ଅତୁଟ ରଖିଲେ (୬) ।

## ବୈଷ୍ଣବ ଧର୍ମ

ସପ୍ତମ ଅଷ୍ଟମ ଶତାବ୍ଦୀରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରଚାର ତଥା ପ୍ରସାର ସମ୍ପର୍କରେ ଯେପରି ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ନିଦର୍ଶନ ମିଳେ, ସେଥିରୁ ଅନୁମାନ କରିବାକୁ ହୁଏଯେ ବହୁ ପ୍ରାଚୀନ କାଳରୁ ଓଡ଼ିଶାରେ ଏ ଧର୍ମ ପ୍ରଚଳିତ ହୋଇଥିବ । ଓଡ଼ିଶାର ବିଭିନ୍ନ ମନ୍ଦିର ମାନଙ୍କରେ ଶଂଖଚକ୍ର ଗଦାପଦ୍ମଧାରୀ ବିଷ୍ଣୁ ମୂର୍ତ୍ତି (ଭୁବନେଶ୍ୱରରେ ସ୍ୱର୍ଣ୍ଣ ଜଳେଶ୍ୱର ମନ୍ଦିର, ବିଷ୍ଣୁଙ୍କର ରାମାବତାରର ଚିତ୍ରିତ ଦୃଶ୍ୟ ସମ୍ବଳିତ ମୂର୍ତ୍ତି, ବୈତାଳ ମନ୍ଦିରର ହରିହର ମୂର୍ତ୍ତି, ଉଦୟଗିରି ଖଣ୍ଡଗିରିରେ ବିଷ୍ଣୁ ମନ୍ଦିର, ଭୁବନେଶ୍ୱରର ମନ୍ଦିରମାନଙ୍କରେ ବାଳ ଗୋପାଳଙ୍କର ବିଭିନ୍ନ ଲୀଳାର ମୂର୍ତ୍ତି (କାଳୀୟ ଦଳନ), ମେଘେଶ୍ୱର ମନ୍ଦିରର ଶ୍ରୀକୃଷ୍ଣଙ୍କର ଗୋଧନ ହରଣର ଦୃଶ୍ୟ, ଭୁବନେଶ୍ୱରର ଅନନ୍ତ ବାସୁଦେବ ମନ୍ଦିର, ତନ୍ମଧ୍ୟରେ ବିଷ୍ଣୁଙ୍କର ଦଶାବତାର ବିଶେଷତଃ ନୃସିଂହାବତାରର ମୂର୍ତ୍ତି, ଶ୍ରୀକୂର୍ମରେ କୂର୍ମନାଥ ମନ୍ଦିର,

ତାଳଚେର ନିକଟସ୍ଥ ପଦ୍ମନାଭ ଶେଷଶାୟୀ ମୂର୍ତ୍ତି, ପ୍ରାଚୀ ଉପତ୍ୟକାର ମୁଖ, କୃଷ୍ଣ-ବାସୁଦେବ ମୂର୍ତ୍ତି, ନିଆଳି ଓ ଅନ୍ୟାନ୍ୟ ସ୍ଥାନର ମାଧବ ମୂର୍ତ୍ତି, ରେମୁଣା ଓ ସାକ୍ଷୀଗୋପାଳର ଗୋପୀନାଥ ମୂର୍ତ୍ତି ହେଉଛି ତାର ପ୍ରତ୍ନତାତ୍ତ୍ୱିକ ନିଦର୍ଶନ । ପୂର୍ବର କୃଷ୍ଣବାସୁଦେବ, ମାଧବ ଓ ଗୋପୀନାଥଙ୍କ ସ୍ଥାନରେ ପରବର୍ତ୍ତୀ କାଳରେ ଦ୍ୱିଭୁଜ ମୁରଲିଧର ଶିଖିପୁଚ୍ଛ ଗୋପୀବଲ୍ଲଭ କୃଷ୍ଣଙ୍କମୂର୍ତ୍ତି ସହ ରାଧାମୂର୍ତ୍ତି ଲୋକପ୍ରିୟ ହୋଇଉଠିଛି । ଓଡ଼ିଶାର ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ରାଜାମାନେ ବୈଷ୍ଣବ ଧର୍ମର ପୃଷ୍ଠପୋଷକତା କରିଥିଲେ । ଓଡ଼ିଶାରେ ରଚିତ ହୋଇଥିବା ବହୁ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥ ବୈଷ୍ଣବଧର୍ମ ସମ୍ବଳିତ ରଚନାରେ ପରିପୁଷ୍ଟ ।

ଗଙ୍ଗବଂଶ ରାଜତ୍ୱ କାଳରେ ଦ୍ୱାଦଶ ଶତାବ୍ଦୀରେ ଜୟଦେବ ତାଙ୍କର ବିଖ୍ୟାତ ଗୀତଗୋବିନ୍ଦ ରଚନା କରି ଓଡ଼ିଶାରେ ବୈଷ୍ଣବଧର୍ମ ସମ୍ବଳିତ ବହୁ କାବ୍ୟ କବିତାର ନିୟାମକ ହୋଇଛନ୍ତି । ଏ ରଚନା ଓଡ଼ିଶାରେ ଦଶାବତାରକୁ ଲୋକପ୍ରିୟ କରିବା ସଙ୍ଗେ ସଙ୍ଗେ, ରାଧାକୃଷ୍ଣ ଲୀଳା ସମ୍ପର୍କିତ ବହୁ ରସୋତ୍ତୀର୍ଣ୍ଣ କାବ୍ୟ କବିତା ଓ ସଙ୍ଗୀତର ଆଦି ଉତ୍ସ ହୋଇଛି ଏବଂ ସହଜିଆ ବୈଷ୍ଣବତତ୍ତ୍ୱ ଓ ସାହିତ୍ୟକୁ ପ୍ରଭାବିତ କରିଛି । ଦ୍ୱୈତବାଦର ସମର୍ଥକ ନରହରି ତୀର୍ଥ ଗଙ୍ଗବଂଶ ରାଜତ୍ୱ କାଳରେ ବୈଷ୍ଣବ ଧର୍ମକୁ ଲୋକପ୍ରିୟ କରିବା ସଙ୍ଗେ ସଙ୍ଗେ ଗଙ୍ଗବଂଶ ଉପରେ ଗଭୀର ପ୍ରଭାବ ପକାଇଥିଲେ ।

ସଂସ୍କୃତ ଶ୍ରୀମଦ୍ ଭାଗବତ ଓ ଜଗନ୍ନାଥ ଦାସଙ୍କର ଭାଗବତରେ ରାଧାଙ୍କର ନାମ ନାହିଁ । ଜୟଦେବଙ୍କର ଗୀତଗୋବିନ୍ଦ ସହଜିଆ ତାନ୍ତ୍ରିକ ବୈଷ୍ଣବ ଧର୍ମ ଓ ଦର୍ଶନରେ ଗଭୀର ପ୍ରଭାବ ପକାଇବା ସଙ୍ଗେ ସଙ୍ଗେ ରାଧାକୃଷ୍ଣଙ୍କୁ ଯେପରି ସହଜିଆ ସୁଲଭ ନାୟକ ନାୟିକାରେ ରୂପାନ୍ତରିତ କରିଛି ତା'ର ବିଶେଷ ପ୍ରଭାବ ପଡ଼ିଛି ଓଡ଼ିଶାର ପଞ୍ଚସଖା ପରବର୍ତ୍ତୀ ଦୀନକୃଷ୍ଣ, ସଦାନନ୍ଦ, ଅଭିମନ୍ୟୁ, ଭକ୍ତଚରଣ, ଗୋପାଳକୃଷ୍ଣ ପ୍ରଭୃତି ବୈଷ୍ଣବ କବିଙ୍କ ରଚନାରେ । ଯୌନ କ୍ରିୟାରେ ମୁକ୍ତ ସ୍ୱାଧୀନତାର ପକ୍ଷପାତୀ ସହଜିଆ ତାନ୍ତ୍ରିକମାନଙ୍କର ନିନ୍ଦା କରିବାକୁ ଯାଇ ସାରଳାଦାସ କୃଷ୍ଣ ଓ ବୃନ୍ଦାଦୂତୀ ରମଣ ପ୍ରସଙ୍ଗ ଅବତାରଣା କରିଛନ୍ତି । ଜୟଦେବଙ୍କ ଗୀତଗୋବିନ୍ଦର ପରକୀୟା ତତ୍ତ୍ୱ ସମାଜ ଓ ସାହିତ୍ୟକୁ କଳୁଷିତ କରିବାରେ କିପରି ଅବସର ସୃଷ୍ଟି କରିଛି ମହାଭାରତରେ ସାରଳାଦାସଙ୍କ ପ୍ରତିକ୍ରିୟା ତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଚୈତନ୍ୟ ଜୟଦେବଙ୍କ ଗୀତଗୋବିନ୍ଦର ଜଣେ ମୁଗ୍ଧ ଶ୍ରୋତା ହେଲେ ହେଁ ସେ ସ୍ଥୂଳ ସହଜିଆ ବୈଷ୍ଣବ ତତ୍ତ୍ୱର ସମର୍ଥକ ନଥିଲେ । ସେ ରାଧାକୃଷ୍ଣର ଅହେତୁକୀ ପ୍ରେମର ଦେଇ ରାଗାନୁଗା ଭାବାଦର୍ଶର ସଂକେତ ଦେଇଥିଲେ, ତାଙ୍କର ଶିଷ୍ୟମାନେ ସାଧନ କ୍ଷେତ୍ର ଓ ସାହିତ୍ୟରେ ତାହା ଉପେକ୍ଷା କରି ଜୟଦେବଙ୍କର ପରକୀୟା ଚିତ୍ରର ସ୍ଥୂଳ ଅନୁକରଣ କରିବାକୁ ଲାଗିଲେ । ଓଡ଼ିଶାର ଶୁଦ୍ଧାଭକ୍ତିର ବୈଷ୍ଣବ କବି ଅଭିମନ୍ୟୁ ରାଧାକୃଷ୍ଣଙ୍କୁ ଅପ୍ରାକୃତ ପ୍ରେମମୂର୍ତ୍ତି ଭାବରେ ତାଙ୍କର ନମସ୍କିଯାରେ ଉଲ୍ଲେଖ କରି ଯେପରି ଲୀଳାର ସ୍ଥୂଳ ଲୌକିକ ଚିତ୍ର ପୁଣି ଛନ୍ଦ ବେଶର ଚିତ୍ର ପ୍ରଦାନ କରିଛନ୍ତି, ସେଥିରୁ ମନେହୁଏ ଶ୍ରୀକୃଷ୍ଣ ଏକ ଭ୍ରଷ୍ଟ ଚରିତ୍ର । ଓଡ଼ିଶାର ପଞ୍ଚସଖା ଚୈତନ୍ୟଙ୍କର ଅତି ନିକଟବର୍ତ୍ତୀ ହେଲେ ହେଁ ନିଜ ନିଜର ସାଧନା ପରମ୍ପରାରେ ଥିଲେ ସ୍ୱତନ୍ତ୍ର । ସେମାନଙ୍କର ରଚନାରେ ଜୟଦେବଙ୍କ ଗୀତଗୋବିନ୍ଦର ସ୍ଥୂଳ ପରକୀୟା ତତ୍ତ୍ୱ ତଥା ଚିତ୍ର ଉପେକ୍ଷିତ । ଜ୍ଞାନ, ଯୋଗ ଓ ଭକ୍ତି ସମନ୍ୱିତ ପନ୍ଥାର ସାଧକ ତଥା କବି ଥିବାରୁ ସେମାନେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱରେ ରାଧାକୃଷ୍ଣତତ୍ତ୍ୱର ଏକ ସ୍ୱତନ୍ତ୍ର ମନୋଜ୍ଞ ଆରୋପ କରିଛନ୍ତି (ଜୀବ, ପରମ ରୂପରେ) ।

## ଜଗନ୍ନାଥ ଓ ଜଗନ୍ନାଥତତ୍ତ୍ୱ

ଓଡ଼ିଶାର ଶାସନ, ସମାଜ, ସଂସ୍କୃତ ଓ ଧର୍ମର କେନ୍ଦ୍ରବିନ୍ଦୁ ହେଉଛନ୍ତି ଏ ଜାତିର ସର୍ବମାନ୍ୟ ଦେବତା ଜଗନ୍ନାଥ । ଜଗନ୍ନାଥଙ୍କର ଉତ୍ପତ୍ତି ରହସ୍ୟାଚ୍ଛନ୍ନ ହେଲେ ମଧ୍ୟ ଇତିହାସର ଘାତପ୍ରତିଘାତମୟ ବନ୍ଧୁର ପଥରେ ରୂପାନ୍ତରିତ ହେଲେ ମଧ୍ୟ ଜଗନ୍ନାଥ ରାଷ୍ଟ୍ରୀୟ ଦେବତା ଭାବରେ ତତ୍ତ୍ୱ ଓ ଅନୁଷ୍ଠାନ ଦୃଷ୍ଟିରୁ ଉତ୍କଳ ତଥା ଭାରତରେ ଅସପତ୍ନ ଗୌରବର ଅଧିକାରୀ । ଓଡ଼ିଶାରେ ବିଭିନ୍ନ ସମୟରେ ବିଭିନ୍ନ ଧର୍ମର ବନ୍ୟା ପ୍ରବାହିତ ହୋଇଛି, ବିଭିନ୍ନ ଧର୍ମର ପୃଷ୍ଠପୋଷକ ରାଜା ଓ ସମ୍ରାଟ ଜଗନ୍ନାଥ ବିଗ୍ରହ, ତତ୍ତ୍ୱ ଓ ଅନୁଷ୍ଠାନର ବିକାଶର ଦାୟିତ୍ୱ ବହନ କରିଛନ୍ତି । ସମୟର ସ୍ରୋତରେ ପ୍ରସାରିତ ବିଭିନ୍ନ ଧର୍ମଗତ ଓ ସଂପ୍ରଦାୟର ସଂକେତ ଜଗନ୍ନାଥ ତତ୍ତ୍ୱ ଓ ଉପାସନା ବିଧିରେ ରହିଥିଲେ ମଧ୍ୟ ଅନୁଷ୍ଠାନଟିର ମୌଳିକ ସତ୍ତା ଅକ୍ଷୁର୍ଣ୍ଣ ରହିଛି ।

ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତାନୁଯାୟୀ ପ୍ରାଚୀନତମ କାଳରେ, ଜଗନ୍ନାଥ ଥିଲେ ଏକ ବ୍ରାହ୍ମଣ୍ୟ ଦେବତା, ଯେ କି ବେଦୀ ରୂପରେ ପୂଜିତ ହେଉଥିଲେ (ସା. ମ ଭା. ବନପର୍ବ) ଏବଂ ସେ ବେଦୀ କାଷ୍ଠନିର୍ମିତ ଥିଲା । ପରେ ଏହା ଶବର ରାଜାଙ୍କ ଦ୍ୱାରା ପୂଜିତ ହେଲା । ଅଷ୍ଟମ ଶତାବ୍ଦୀରେ ଆସାମରୁ ଆଗତ ଭୌମରାଜାମାନେ ଶବର ରାଜାଙ୍କୁ ପରାସ୍ତ କରି କାଷ୍ଠ-ବେଦୀରୁ ତିନୋଟି ମୂର୍ତ୍ତି ନିର୍ମାଣ କରି ଗୋଟିଏ ମନ୍ଦିରରେ ପ୍ରତିଷ୍ଠା କଲେ । ପରେ ସୋମବଂଶୀ ଯଯାତି ଓ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦେବ ପୁରୀ ନୀଳାଚଳ ଧାମରେ ସୁଦୃଶ୍ୟ ମନ୍ଦିରମାନ ନିର୍ମାଣ କଲେ । ଗଙ୍ଗ ରାଜତ୍ୱ ଆରମ୍ଭରୁ ପ୍ରାଚୀନତା, ମନୋଜ୍ଞ ପରିବେଶରେ କ୍ଷେତ୍ରର ମନୋଜ୍ଞ ଅବସ୍ଥିତି ଓ ରାଜନୈତିକ କାରଣରୁ ଜଗନ୍ନାଥ ମନ୍ଦିର ଓ କ୍ଷେତ୍ର ସମଗ୍ର ଉତ୍କଳ ତଥା ଭାରତରେ ପ୍ରସିଦ୍ଧ ହୋଇ ଉଠିଛି (୭) ।

ଜଗନ୍ନାଥତତ୍ତ୍ୱ ହିନ୍ଦୁଧର୍ମର ପରସ୍ପର ବିରୋଧୀ ବିଭିନ୍ନ ଧର୍ମ-ମତ ଓ ସଂପ୍ରଦାୟର ଏକ ଚମତ୍କାର ସମନ୍ୱୟ (Synthesis) । ପ୍ରାଥମିକ ଭୌମ ଶାସକମାନେ ମହାଯାନୀ ବୌଦ୍ଧ ମତାବଲମ୍ବୀ ଥିବାରୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିନିମୂର୍ତ୍ତିଙ୍କୁ ବୌଦ୍ଧ-ଧର୍ମର ତ୍ରିରତ୍ନ ବୋଲି କେହି କେହି ଯୁକ୍ତି କରିଛନ୍ତି । ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତି ତାଙ୍କର ଜ୍ଞାନସିଦ୍ଧି ଗ୍ରନ୍ଥରେ ଜଗନ୍ନାଥଙ୍କୁ ବୁଦ୍ଧ-ଭାବରେ କଳ୍ପନା କରିଅଛନ୍ତି । ସାରଳାଦାସ ତାଙ୍କର ମହାଭାରତରେ ଜଗନ୍ନାଥଙ୍କୁ ବୁଦ୍ଧରୂପେ ଓ ସାରଳାଙ୍କୁ ବୌଦ୍ଧ ଦେବୀ ରୂପେ ବନ୍ଦନା କରିଛନ୍ତି । ଜଗନ୍ନାଥ ଦାସ ବୁଦ୍ଧଙ୍କୁ ଜଗନ୍ନାଥଙ୍କ ଏକ ଅବତାର ରୂପେ ଗ୍ରହଣ କରିଛନ୍ତି । ଲୋହୀଗୀତା, ଗୁପ୍ତଭକ୍ତ ଗୀତା, ଶୂନ୍ୟ ସଂହିତା, ବୈଚନ୍ଦ୍ର ଗୀତା ଓ ନାମରତ୍ନ ଗୀତାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତ୍ରିମୂର୍ତ୍ତି ବୁଦ୍ଧାବତାର ଭାବରେ ବର୍ଣ୍ଣିତ ।

ଗଙ୍ଗ ରାଜତ୍ୱ ପୂର୍ବରୁ ଶୈବ, ଶାକ୍ତ ଓ ବୈଷ୍ଣବ ଏହି ତିନୋଟି ମୁଖ୍ୟମତ ଓଡ଼ିଶାରେ ପାଖାପାଖି ରହିଛନ୍ତି । ନିଜର ଅସ୍ତିତ୍ୱ ହରେଇବା ଦୂରେଥାଉ ବରଂ ଶ୍ରେଷ୍ଠତ୍ୱ ଜାହିର କରୁଥିଲେ । ଗଙ୍ଗ ରାଜତ୍ୱ କାଳରେ ଏଗୁଡ଼ିକର ମିଶ୍ରଣର ପ୍ରଚେଷ୍ଟା ଫଳବତୀ ହୋଇ ନଥିଲା । ଓଡ଼ିଶାରେ ପୁରୀ, ଭୁବନେଶ୍ୱର, କୋଣାର୍କ, ମହାବିନାୟକ ଓ ବିରଜା ଏହି ପ୍ରସିଦ୍ଧ ପାଞ୍ଚଟି ପୀଠ ଯଥାକ୍ରମେ ବୈଷ୍ଣବ, ଶୈବ, ସୌର, ଗାଣପତ୍ୟ ଓ ଶାକ୍ତ ଏହି ପାଞ୍ଚଟି ତତ୍ତ୍ୱର ପ୍ରତିନିଧିତ୍ୱ କଲେ ମଧ୍ୟ ପରେ ଜଗନ୍ନାଥ କ୍ଷେତ୍ରରେ ଯେଉଁ ପ୍ରକାର ଉପାସନା ଲକ୍ଷିତ ହେଲା, ତାହା ହେଲା ସାର୍ବଜନୀନ । ଗଙ୍ଗରାଜତ୍ୱକାଳରେ ଜଗନ୍ନାଥଙ୍କର ବ୍ରାହ୍ମଣ୍ୟ ଉତ୍ପତ୍ତି ଉପରେ ଗୁରୁତ୍ୱ ପ୍ରଦାନ କରାଗଲେ ମଧ୍ୟ ଶେଷଭାଗରେ ଜଗନ୍ନାଥ ତତ୍ତ୍ୱରେ ବୈଷ୍ଣବ, ଶୈବ ଓ ଶାକ୍ତ ଏହି ତିନି ମୁଖ୍ୟ ମତବାଦର ସମନ୍ୱୟ ସାଧିତ ହୋଇଛି । ଏହା ସତ୍ତ୍ୱେ ଏଥିରେ ପ୍ରାଚୀନ ଧର୍ମ ଓ ତନ୍ତ୍ରର କେତେକ ଉପାଦାନ ଉପେକ୍ଷିତ ହୋଇନାହିଁ । ନୀଳାଚଳ କ୍ଷେତ୍ର ପୁରୀ ଜଗନ୍ନାଥ ତତ୍ତ୍ୱର ଉତ୍ସସ୍ଥଳ ହେଲେ ମଧ୍ୟ ସମସ୍ତ ଅଞ୍ଚଳରେ ଏହା ପରିବ୍ୟାପ୍ତ । ତେଣୁ ଏହା ଓଡ଼ିଶାର ଜାତୀୟ ଧର୍ମ । ଏହି ସମନ୍ୱୟାତ୍ମକ ଜଗନ୍ନାଥତତ୍ତ୍ୱର ପ୍ରଭାବ ସୌର, ଶୈବ ଓ ଶାକ୍ତ କ୍ଷେତ୍ରଗୁଡ଼ିକ ଉପରେ ପରିଲକ୍ଷିତ ହୁଏ । ଜଗନ୍ନାଥ ମନ୍ଦିର ସହ ଲିଙ୍ଗରାଜ, କୋଣାର୍କ, ବିରଜା ପ୍ରଭୃତି ମନ୍ଦିର ଲକ୍ଷ୍ୟକଲେ ଜଣାଯିବ ଯେ ଏଥିରେ ଅଧିଷ୍ଠାତ୍ରୀ ଦେବତା ସହ ମନ୍ଦିର ଚତ୍ୱରରେ (ବେଢ଼ାରେ) ଅନ୍ୟ ଦେବତା ଓ ଦେବୀଙ୍କର ମୂର୍ତ୍ତି ଓ ମନ୍ଦିର ପ୍ରତିଷ୍ଠିତ ।

ପ୍ରଫେସର ଓ ବିଭାଗୀୟ ମୁଖ୍ୟ
ଓଡ଼ିଆ ବିଭାଗ
ରେଭେନ୍ସା କଲେଜ
କଟକ–୩

୧ । Dr. K. C. Panigrahi, History of Orissa, 1st Edition, Kitab Mahal, Cuttack, Page—309.

୨ । Ibid—P. 311

(୩) ତନ୍ତ୍ରଯାନ ତିନୋଟି ଭାଗରେ ବିଭକ୍ତ ଯଥା—କାଳଚକ୍ରଯାନ ବା ମନ୍ତ୍ରଯାନ, ବଜ୍ରଯାନ, ସହଜଯାନ । ତନ୍ତ୍ରଯାନ ମାଧ୍ୟମରେ ବୌଦ୍ଧ ସାଧନାରେ ମୁଦ୍ରା, ମଣ୍ଡଳ, ମାରଣ, ମୋହନ, ସ୍ତମ୍ଭନ, ଉଚ୍ଚାଟନ, ବଶୀକରଣ ପ୍ରଭୃତି ସାଧନା ଦେଖାଯାଏ । ସମ୍ବଲପୁର ଅଞ୍ଚଳରେ ବୌଦ୍ଧସାଧକ ପିତୋପାଦ 'କାଳଚକ୍ରଯାନ' ନାମକ ଗ୍ରନ୍ଥ ରଚନା କରିଥିଲେ ।

(୪) ଫକୀର ମୋହନ ଦାସ, ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା । ସୋମବଂଶୀ ରାଜାମାନେ ସହଜ ଯାନରେ ତାନ୍ତ୍ରିକ ସାଧନାର ସମର୍ଥକ ନଥିଲେ । ଗଙ୍ଗବଂଶର ରାଜାମାନେ ବ୍ରାହ୍ମଣ୍ୟ ହିନ୍ଦୁଧର୍ମର ପୃଷ୍ଠପୋଷକ ଥିବାରୁ (ପ୍ରଥମେ ଥିଲେ ଶୈବ, ଓଡ଼ିଶା ଅଧିକାର ପରେ ବୈଷ୍ଣବଧର୍ମ ପ୍ରତି ଆକୃଷ୍ଟ) ବୌଦ୍ଧଧର୍ମ ସେମାନଙ୍କର ଅନୁକୂଳ ଦୃଷ୍ଟି ଲାଭ କରିନଥିଲା । ଜନଶ୍ରୁତି ରହିଛି ଯେ ଏମାନଙ୍କ ରାଜତ୍ୱରେ ବୌଦ୍ଧମାନେ ବିତାଡ଼ିତ ହୋଇ ଅରଣ୍ୟାଞ୍ଚଳ ଓ ଦୂର-ଦୂରାନ୍ତକୁ ଚାଲିଯାଇଥିଲେ । ବୌଦ୍ଧଧର୍ମର ମହାଯାନ ଶାଖାର ପ୍ରଭାବ କ୍ରମଶଃ ସୀମିତ ହୋଇଗଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ଲୋପ ପାଇଯାଇ ନଥିଲା, ପ୍ରତ୍ୟୁତ ଏହା ରୂପାନ୍ତର ଗ୍ରହଣ କରି ବ୍ରାହ୍ମଣ୍ୟ ଧର୍ମର ବିଭିନ୍ନ ସମ୍ପ୍ରଦାୟ ବିଶେଷତଃ ଶୈବ ଓ ଶାକ୍ତ ମତରେ ଏହାର ପ୍ରଭାବ ଛାଡ଼ି ଯାଇଛି । ପରିବର୍ତ୍ତୀ କାଳରେ ନାଥଧର୍ମ, ପଞ୍ଚସଖା ମତ ଓ ମହିମାଧର୍ମରେ ଏହାର କେତେକ ଦାର୍ଶନିକ ଦୃଷ୍ଟିଭଙ୍ଗୀ ପରିଲକ୍ଷିତ ହୁଏ ।

୫ । Dr. Panigrahi, History of Orissa, PP. 330—385

୬ । Ibid, PP. 319-320

୭ । Ibid




ସରକାରୀ ପାଠ୍ୟପୁସ୍ତକ ମୁଦ୍ରଣାଳୟରେ ଶିକ୍ଷାମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ଉଦ୍‌ବୋଧନ ।

# ଆଜିର ଜନସଂଖ୍ୟା ଓ ଯୁବସମାଜ

ଡକ୍ଟର ଜଗନ୍ନାଥ ମହାନ୍ତି

ଆଜିର ଦୁନିଆରେ ଲୋକସଂଖ୍ୟା ବୃଦ୍ଧି ଏକ ଭୟାନକ ସମସ୍ୟା ହୋଇ ଦେଖା ଦେଇଛି । ଦିନ ଥିଲା ଯେତେବେଳେ ଦେଶର ଜନସଂଖ୍ୟା ବଢ଼ାଇବା ଦିଗରେ ଜନସାଧାରଣଙ୍କଠାରୁ ସରକାରଙ୍କ ପର୍ଯ୍ୟନ୍ତ ସମସ୍ତେ ସଚେଷ୍ଟ ଥିଲେ । ଦେଶର ସମୃଦ୍ଧି ଓ ନିରାପତ୍ତା ଦୃଷ୍ଟିରୁ ଜନସଂଖ୍ୟା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । କିନ୍ତୁ ଆଜି ତାର ବିପରୀତ ଫଳ ଫଳିଛି । "ଅତି ଗହଳେ ସର୍ବନାଶ" ପରି ଜନ ଗହଳେ ସୃଷ୍ଟିର ସର୍ବନାଶ ଘଟିବାର ଆଶଙ୍କା ହେଲାଣି । ଏତେ ଦ୍ରୁତ ଗତିରେ ଲୋକସଂଖ୍ୟା ବଢ଼ିବାରେ ଲାଗିଛି ଯେ ପଣ୍ଡିତମାନେ ଏହାକୁ "ଲୋକସଂଖ୍ୟା—ବିସ୍ଫୋରଣ" (Population Explosion) । ବୋଲି କହୁଛନ୍ତି ।

ପ୍ରଥମ ଶତାବ୍ଦୀରେ ପୃଥିବୀର ଲୋକସଂଖ୍ୟା ଥିଲା ୨୫ କୋଟି । ଷୋଡ଼ଶ ଶତାବ୍ଦୀରେ ଏହି ଲୋକସଂଖ୍ୟା ବଢ଼ି ଦୁଇଗୁଣ ଅର୍ଥାତ୍ ୫୦ କୋଟି ହୋଇଥିଲା । ମାତ୍ର ଆଜି ପୃଥିବୀର ଜନସଂଖ୍ୟା ୩୦୦ କୋଟି । ଏହି ଅନୁପାତରେ ବଢ଼ି ବିଂଶ ଶତାବ୍ଦୀର ଶେଷ ବେଳକୁ ପୃଥିବୀର ଲୋକସଂଖ୍ୟା ୬୦୦ କୋଟି ହୋଇଯିବ । ଆଜି ଯେଉଁ ପିଲା ଜନ୍ମ ହେଲା, ତାକୁ ୬୦ବର୍ଷ ହେଲାବେଳକୁ ପୃଥିବୀର ଲୋକସଂଖ୍ୟା ୧୫୦୦ କୋଟି ହୋଇଥିବ ଆଉ ତାର ମାତ୍ର ୬ ହଜାର କୋଟି ଲୋକ ବାସକରୁଥିବା ଏହି ପୃଥିବୀର ବାସିନ୍ଦା ହୋଇଥିବ । ଆଜିଠୁଁ ଏମିତି ୬—୭ ଶହ ବର୍ଷ ପରେ ପୃଥିବୀର ଲୋକସଂଖ୍ୟା ଏତେ ବଢ଼ିଯାଇଥିବ, ଯାହା ଫଳରେ ପ୍ରତି ବର୍ଗଫୁଟ ଭୂଇଁ ଉପରେ ଜଣେ ଲେଖାଏଁ ଲୋକ ଠିଆ ହୋଇ-ଥିବେ । କି ଭୟଙ୍କର ଅବସ୍ଥା ସତେ ! କି ନାରକୀୟ ଦୃଶ୍ୟ ହୋଇ ନ ଥିବ !!

ଏହା ଅବଶ୍ୟ ଅଙ୍କ ହିସାବ । କଳ୍ପନାରେ ପୃଥିବୀର ଏକ ଭବିଷ୍ୟତ ଚିତ୍ର ! ମାତ୍ର ଏଥିରେ ଯେ ସତ୍ୟତା ଅଛି ଏହା କିଏ ଅସ୍ୱୀକାର କରିବ ? ଆମରି ଏଇ ଭାରତରେ ତ ପ୍ରତି ମାସରେ ୧୦ ଲକ୍ଷ ପିଲା ଜନ୍ମ ନେଉଛନ୍ତି । ଏଠାରେ ପୁଣି ପ୍ରଥମରୁ ଜନ୍ମ-ନିୟନ୍ତ୍ରଣ ବ୍ୟବସ୍ଥା କାର୍ଯ୍ୟକାରୀ ହେଉଛି । ପୃଥିବୀର ହାରାହାରି ଲୋକ ସଂଖ୍ୟା ବୃଦ୍ଧି ଶତକଡ଼ା ଦୁଇ । ବହୁ ଅନୁନ୍ନତ ଦେଶରେ ତ ଏହା ଶତକଡ଼ା ସାଢ଼େ ତିନିରୁ ଅଧିକ । ଶତକଡ଼ା ୧ ହାରରେ ବଢ଼ୁଥିବା ଲୋକସଂଖ୍ୟା ୭୦ ବର୍ଷରେ ଦୁଇଗୁଣ ହୋଇଯାଏ । ଶତକଡ଼ା ସାଢ଼େ ତିନି ହାରରେ ବଢ଼ୁଥିବା ଦେଶର ଲୋକସଂଖ୍ୟା ତ ମାତ୍ର ୨୦ ବର୍ଷରେ ଦୁଇଗୁଣ ହୋଇଯିବ ।

ଏହିଯେଉଁ ଜନସଂଖ୍ୟା ବିସ୍ଫୋରଣ ଘଟୁଛି, ଏହାର ପରିଣତି କ'ଣ ? ଅଭାବ ଅସୁବିଧା, ଦୁଃଖକଷ୍ଟ, ଅଶାନ୍ତି-ଅସନ୍ତୋଷ ଆଉ ରୋଗ ମହାମାରୀ, । ବିଶ୍ୱ ବ୍ୟାଙ୍କରେ ପୂର୍ବତନ ସଭାପତି ରବର୍ଟ ମ୍ୟାକ୍‌ନାମାରା କହିଛନ୍ତି ଯେ ପୃଥିବୀର ତିନିଭାଗରୁ ଏକ ଭାଗ ଲୋକ କେବଳ ଏକ ପ୍ରକାର ସୁବିଧାରେ ଚଳୁଛନ୍ତି । ମାତ୍ର ମଣିଷ ସମାଜର ତିନିଭାଗରୁ ଦୁଇଭାଗ ଅର୍ଥାତ୍ ୨୦୦ କୋଟି ଲୋକ ଜୀବନର କଠିନ ସଂଗ୍ରାମରେ ବ୍ୟସ୍ତ । ଜୀବନ ସେମାନଙ୍କ ପାଇଁ ଜୀବନ୍ତ ମରଣ । ମୃତ୍ୟୁ ସେମାନଙ୍କ ପାଇଁ ଆଶୀର୍ବାଦ । ଜୀବନ ସେମାନଙ୍କ ପାଇଁ ଦୁର୍ବିସହ । ଭୋକଶୋଷ, ଅଶିକ୍ଷା, ଅନଟନ ଆଉ ଅସନ୍ତୋଷର ନିଆଁ ସେମାନଙ୍କ ଜୀବନକୁ ତିଳ ତିଳ କରି ଦହୁଛି । ଧନୀ ଓ ଦରିଦ୍ର ଦେଶର ଜଣପିଛା ଆୟଭିତରେ ଆକାଶପାତାଳ ପ୍ରଭେଦ । ବ୍ୟବଧାନର ମେଘନାଦ ପାଚେରୀ । ପାଶ୍ଚାତ୍ୟ ଦେଶରେ ମୁଣ୍ଡପିଛା ରୋଜଗାର ୨୦ ହଜାର ଟଙ୍କା ହେବାବେଳେ ଏସିଆ ବା ଆଫ୍ରିକା ମହାଦେଶରେ ଏହା ମୋଟ ୭ ଶହ ଟଙ୍କା, ଯେଉଁଥିରେ ଜଣକୁ ତାର ପେଟପାଟଣା ଚଳାଇବା କାଠିକର ପାଠ । ଏହି ଦୁଃଖକଷ୍ଟ ପୁଣି ସଦାବେଳେ ସମାନ ରହୁନାହିଁ । ଦିନକୁ ଦିନ ଏହି ବୋଝ ବଢ଼ି ବଢ଼ି ଗଲିଛି । ମଣିଷର ଇତିହାସରେ ଏହି ସମସ୍ୟା ଯେମିତି ଅଜଣା ଅଶୁଣା, ସେମିତି ଭୟାନକ ।

ଏହିସବୁ ଅନୁନ୍ନତ ତଥା ବିକାଶଶୀଳ ଦେଶରେ ସାମାଜିକ ଓ ଅର୍ଥନୈତିକ ଉନ୍ନତି ପାଇଁ ଯେତେ ଯୋଜନା କାର୍ଯ୍ୟକାରୀ ହେଉଛି, ଲୋକମାନଙ୍କର ଅବସ୍ଥାରେ ଆଶାନୁରୂପ ପରିବର୍ତ୍ତନ ସେତେ ପରିଦୃଷ୍ଟ ହେଉନାହିଁ । "ଗୋଦରା କୋଡ଼େ ଯେତେ ମାଡ଼େ ସେତେ" । ଏହିସବୁ ଯୋଜନାର ସୁଫଳ ଲୋକସଂଖ୍ୟା ବୃଦ୍ଧିର କୁଫଳକୁ ବେଶୀ କିଛି ଟପି ଯାଇ ପାରୁ ନାହିଁ । ତେଣୁ ଆଜିକାଲି ସାମୂହିକ ଉନ୍ନୟନ କ୍ଷେତ୍ରରେ ଲୋକସଂଖ୍ୟାର ନିୟନ୍ତ୍ରଣ ପ୍ରଥମ ସୋପାନ ହୋଇଛି । ଅନୁନ୍ନତ ଦେଶଗୁଡ଼ିକର ଆର୍ଥିକ ଓ ସାମାଜିକ ଅଗ୍ରଗତିରେ ଲୋକସଂଖ୍ୟା ବୃଦ୍ଧି ପ୍ରଧାନ ପ୍ରତିବନ୍ଧକ ରୂପେ ଠିଆ ହୋଇଛି ଓ ପୃଥିବୀର କୋଟି କୋଟି ଲୋକ ଆଜି ହା ଅନ୍ନର ଚିତ୍କାର କରୁଛନ୍ତି । ରୋଗମଡ଼କରେ ମରୁଛନ୍ତି ଆଉ ଦୁଃଖ କଷ୍ଟରେ ସଢ଼ୁଛନ୍ତି ।

ଜାତିସଂଘର ଖାଦ୍ୟ ଓ କୃଷି ସଂଗଠନଙ୍କ ମତରେ ଅନୁନ୍ନତ ଓ ଉନ୍ନତିଶୀଳ ଦେଶଗୁଡ଼ିକର ଶତକଡ଼ା ୮୦ ଭାଗ ଲୋକ ଉପଯୁକ୍ତ ସାରବାନ୍ ଖାଦ୍ୟ ପାଉପାରୁନାହାନ୍ତି । ଏଇ ସଂଗଠନ ଜଣେ ଲୋକପାଇଁ ଅନ୍ୟୁନ ୨୪ ଶହ କ୍ୟାଲୋରୀ ଥିବା ଖାଦ୍ୟ ଲକ୍ଷ୍ୟ ରଖିଥିଲେ ହେଁ ମୋଟ ୧୮ ଶହ କ୍ୟାଲୋରୀ ଥିବା ଖାଦ୍ୟ ଖାଇ ଅଧିକାଂଶ ବଂଚୁଛନ୍ତି । ବହୁଦେଶ ପକ୍ଷେ ଏଇ ଲକ୍ଷ୍ୟ ହାସଲ କରିବା ଅସମ୍ଭବ ହେଉଛି । ଫଳତଃ ଅଧିକାଂଶ ଲୋକ ସ୍ୱାସ୍ଥ୍ୟ ହରାଇବା ସଙ୍ଗେ ସଙ୍ଗେ ନାନା ପ୍ରକାର ରୋଗର ଶିକାର ହେବାକୁ ବାଧ୍ୟ ହେଉଛନ୍ତି । ଆମ ଭାରତରେ ସ୍ତ୍ରୀମାନଙ୍କ ମଧ୍ୟରୁ ଶତକଡ଼ା ୬୦ ସ୍ଥାୟୀ ଭାବରେ ରକ୍ତହୀନତା ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଅନୁନ୍ନତ ଦେଶମାନଙ୍କରେ ଶିଶୁ ମୃତ୍ୟୁ ଏତେ ଅଧିକ ଯେ ସାଢ଼ଆଠୋଟି ପିଲା ଜନ୍ମହେଲେ, ସେଥିରୁ ମଧ୍ୟ ୩।୪ ଜଣ ବଞ୍ଚିଥାନ୍ତି । ପୁଣି କାଇରୋରେ ଗୋଟିଏ ଗବେଷଣାରୁ ପ୍ରକାଶ ଯେ ଯେଉଁମା'ଙ୍କର ଶିଶୁ ମରିଥାନ୍ତି, ସେ ବହୁ ସଂଖ୍ୟାରେ ଶିଶୁ ଜନ୍ମ କରିଥାନ୍ତି ।

ଉନ୍ନତିଶୀଳ ଦେଶଗୁଡ଼ିକର ଜନସଂଖ୍ୟା ଯେଉଁ ଦ୍ରୁତ ଗତିରେ ବଢ଼ିଚାଲିଛି, ତାର ଅଧିକାଂଶ ଭାଗ ତରୁଣ ତରୁଣୀ । ଯେତେବେଳେ ୟୁରୋପରେ ୧୫ ବର୍ଷରୁ କମ୍ ପିଲାଙ୍କ ସଂଖ୍ୟା କେବଳ ଶତକଡ଼ା ୨୫, ଆଫ୍ରିକାରେ ଏହା ଶତକଡ଼ା ୪୩ ଏବଂ ଏସିଆରେ ଏହା ଶତକଡ଼ା ୪୦ । ପିଲାମାନଙ୍କୁ ଜାତୀୟ ସଂପଦ ବୋଲି ଧରାଯାଉଥିଲେ ହେଁ ବର୍ତ୍ତମାନ ଅବସ୍ଥାରେ ସେମାନେ ଖାଦ୍ୟାଭାବକୁ ବହୁଗୁଣିତ କରୁଛନ୍ତି । ପିଲାମାନେ ପୁଣି ଅଧିକ ଖାଦ୍ୟାଭାବର ଶିକାର । ଅନୁସଂଧାନରୁ ଜଣା ପଡ଼ିଛି ଯେ ଏହିସବୁ ଦେଶରେ ମୃତ୍ୟୁ ସଂଖ୍ୟା ମଧ୍ୟରୁ ପ୍ରାୟ ଅଧେ ୬ ବର୍ଷରୁ କମ୍ ପିଲାଙ୍କର । ପ୍ରତି ୧୦୦୦ ପିଲାଙ୍କ ମଧ୍ୟରୁ ଯୁକ୍ତରାଷ୍ଟ୍ର ଆମେରିକାରେ ୨୩ ଜଣ ମରୁଥିବା ବେଳେ ଏସବୁ ବିକାଶଶୀଳ ଦେଶରେ ୨୪୦ ଜଣ ପିଲା ମୃତ୍ୟୁ ମୁଖରେ ପଡ଼ୁଛନ୍ତି । ନାନା ପ୍ରକାର ରୋଗ, ଓ ଖାଦ୍ୟାଭାବ ଏହାର ମୁଖ୍ୟ କାରଣ । ଉପଯୁକ୍ତ ଖାଦ୍ୟାଭାବରୁ ଶତକଡ଼ା ୬୦।୭୦ ପିଲା ନାନା ପ୍ରକାର ରୋଗରେ ଆକ୍ରାନ୍ତ ହୁଅନ୍ତି ଏବଂ ସେଥିରୁ ୩୦।୪୦ ଜଣ ମୃତ୍ୟୁ ମୁଖରେ ପଡ଼ନ୍ତି ।

ଉପଯୁକ୍ତ ଖାଦ୍ୟାଭାବରୁ କେବଳ ଯେ ଏତେ ତରୁଣ ତରୁଣୀ ଅକାଳ ମୃତ୍ୟୁମୁଖରେ ପଡ଼ନ୍ତି ତାହା ନୁହେଁ, ବୟସ୍କ ମାନଙ୍କର କାର୍ଯ୍ୟଦକ୍ଷତା ମଧ୍ୟ କମିଯାଏ । ପରୀକ୍ଷା କରି ଦେଖା ଯାଇଛି ଯେ, ଭଲ ଖାଦ୍ୟ ପାଉଥିବା ଶ୍ରମିକ ଉପଯୁକ୍ତ ଖାଦ୍ୟ ନପାଉଥିବା ଶ୍ରମିକଠାରୁ ୫ ଗୁଣ ଅଧିକ ଉତ୍ପାଦନ କରିପାରେ ବା କାର୍ଯ୍ୟ କରିପାରେ । ଜାତିସଂଘର ଖାଦ୍ୟ ଓ କୃଷି ସଂଗଠନର ପୂର୍ବତନ ଡିରେକ୍ଟର ଜେନେରାଲ ଡକ୍ଟର ବି. ଆର. ସେନ୍ କହିଛନ୍ତି ଯେ, ଅଧିକାଂଶ କ୍ଷେତ୍ରରେ ଉନ୍ନତଶୀଳ ଦେଶଗୁଡ଼ିକ ଖାଦ୍ୟାଭାବଗ୍ରସ୍ତ । ଶ୍ରମିକମାନେ ସେମାନଙ୍କ ଦୁର୍ବଳ ଦେହରେ ଯଥାସମ୍ଭବ ଖଟନ୍ତି । ମାତ୍ର ସେମାନଙ୍କ କାର୍ଯ୍ୟଦକ୍ଷତା କମିଯିବା ସ୍ୱାଭାବିକ । ୟୁରୋପର ଗୋଟିଏ ୮ ବର୍ଷ ପିଲାର ଦେହ ଯେତିକି ବଢ଼ିଥାଏ, ଅନୁନ୍ନତ ଦେଶର ୧୨ ବର୍ଷର ପିଲାର ଦେହ ସେତିକି ବଢ଼ିଥାଏ । ଜଣେ ଭାରତୀୟ ସାରବାନ୍ ଖାଦ୍ୟବିତ୍ ଡକ୍ଟର ସି. ଗୋପାଳନ୍‌ଙ୍କ ମତରେ ଆମର ଶତକଡ଼ା ୮୦ ପିଲା ସାରବାନ୍ ଖାଦ୍ୟର ଅଭାବଯୋଗୁଁ ଦୁର୍ବଳ ହୋଇଥାନ୍ତି ।

ମନୁଷ୍ୟର ଯେଉଁ ବୟସରେ ମାନସିକ ଶକ୍ତିର ଯଥେଷ୍ଟ ଉନ୍ନତି ଘଟେ, ସେଇ ସମୟରେ ଖାଦ୍ୟାଭାବ ହେଲେ ବଡ଼ ଶୋଚନୀୟ ପରିସ୍ଥିତି ସୃଷ୍ଟି ହୁଏ । ସାଧାରଣତଃ ୪ ବର୍ଷରୁ କମ୍ ପିଲାଙ୍କର ମାନସିକ ବିକାଶ ଖୁବ୍ ଦ୍ରୁତ ହୋଇଥାଏ । ମାତ୍ର ଖାଦ୍ୟାଭାବରୁ ଏଥିରେ ବଡ଼ ବ୍ୟାଘାତ ସୃଷ୍ଟି ହୁଏ । ବୈଜ୍ଞାନିକମାନେ କହନ୍ତି ମନୁଷ୍ୟ ମସ୍ତିଷ୍କର ପ୍ରାୟ ଶତକଡ଼ା ୯୦ ଭାଗ ଜୀବନର ପ୍ରଥମ ଚାରିବର୍ଷ ମଧ୍ୟରେ ଗଠିତ ହୋଇଥାଏ ଏବଂ ସାରବାନ୍ ଖାଦ୍ୟ ଅଭାବରୁ ପ୍ରାୟ ୨୫ ଭାଗ ପର୍ଯ୍ୟନ୍ତ ମାନସିକ ଶକ୍ତି ବାଧାପ୍ରାପ୍ତ ହୁଏ । ଏହି ଅଳ୍ପ ବୁଦ୍ଧି-ସଂପନ୍ନ ପିଲାମାନେ ବଡ଼ହେଲେ ବିଶେଷ କିଛି ଭଲକାମ କରିପାରନ୍ତି ନାହିଁ ଏବଂ ଅନୁନ୍ନତ ଆର୍ଥିକ ଓ ସାମାଜିକ ସ୍ଥିତିରେ ଜୀବନଯାପନ କରନ୍ତି । ଶକ୍ତିସାମର୍ଥ୍ୟ, ଉତ୍ସାହ ଉଦ୍ଦୀପନା, ଅଧ୍ୟୟନ ଦକ୍ଷତା ଓ ଉଦ୍ୟମଶୀଳତା ପ୍ରଭୃତି ଯେଉଁ ମାନସିକ ଗୁଣଗୁଡ଼ିକ ମନୁଷ୍ୟକୁ ଉଚ୍ଚକୋଟୀର ସଭ୍ୟତା ଓ ସଂସ୍କୃତି ଗଠନରେ ସାହାଯ୍ୟ କରେ, ତାର ବିକଟ ଅଭାବ ଘଟିଥାଏ । ଏହି ଅବସ୍ଥା ପୁଣି ପରମ୍ପରା କ୍ରମେ ଗଡ଼ିଚାଲେ । ବର୍ତ୍ତମାନ ଏହିପରି ଅନୁନ୍ନତ ମାନସିକ ଶକ୍ତି ସଂପନ୍ନ ପିଲାଙ୍କ ସଂଖ୍ୟା ୩୦ କୋଟି ।

ଦ୍ରୁତ ଜନସଂଖ୍ୟାବୃଦ୍ଧି ଯୋଗୁଁ ଏସବୁ ଅନୁନ୍ନତ ଦେଶର ସରକାରମାନେ ସାମାଜିକ ଓ ଅର୍ଥନୈତିକ ଉନ୍ନତି ଦିଗରେ ବିଶେଷ ଅର୍ଥ ଖର୍ଚ୍ଚ କରିବାକୁ ସମର୍ଥ ହେଉନାହାଁନ୍ତି । ଶିକ୍ଷାର ପ୍ରସାର କିମ୍ବା ଉନ୍ନତି ସମ୍ଭବ ହୁଏ ନାହିଁ । ଫଳରେ ବିଷଚକ୍ର ପରି କ୍ରମେ କ୍ରମେ ପରିସ୍ଥିତି ଅଧିକ ସାଙ୍ଘାତିକ ଆଉ ଜଟିଳ ହେବ । ପାରିବାରିକ, ସାମାଜିକ, ରାଜନୈତିକ ତଥା ସାଂସ୍କୃତିକ ଜୀବନ ବିପର୍ଯ୍ୟସ୍ତ ହୋଇପଡ଼ିବ ।

ଏହି ଅବସ୍ଥାକୁ ଲକ୍ଷ୍ୟକରି ଜଣେ ବିଖ୍ୟାତ ଇଂରେଜ ବୈଜ୍ଞାନିକ ତଥା ସାହିତ୍ୟିକ ଲର୍ଡ ସି. ପି. ସୋ କହିଛନ୍ତି ଯେ ବିଭିନ୍ନ ସ୍ଥାନରେ ଘଟୁଥିବା ଦୁର୍ଭିକ୍ଷ କ୍ରମେ କ୍ଷୁଧାର ମହା ସମୁଦ୍ରରେ ପରିଣତ ହେବ ଏବଂ ସମ୍ଭବତଃ ଏହି ଶତାବ୍ଦୀ ଶେଷ ପୂର୍ବରୁ ଏକ ପ୍ରଳୟର ଅଭିନୟ ହୋଇଯିବ । କୋଟି କୋଟି ଲୋକଙ୍କର ହା ଅନ୍ନ ଚିତ୍କାର ଗଗନ ପବନ ମୁଖରିତ କରିବ । ବିସୂଚିକା ମହାମାରୀରେ ଲକ୍ଷ ଲକ୍ଷ ଲୋକ ମୃତ୍ୟୁମୁଖରେ ପଡ଼ିବେ । ଏହି ଦୁର୍ଲଭ ମନୁଷ୍ୟ ଜୀବନ ହେବ ଯନ୍ତ୍ରଣାମୟ ! ଏହି ସୁନ୍ଦର ସୃଷ୍ଟି ହେବ ବୀଭତ୍ସମୟ !

ଏଥିରୁ ରକ୍ଷା ପାଇବାର ଉପାୟ କ'ଣ ? ବୁଦ୍ଧି ବିଚାର ବଳରେ ଲୋକସଂଖ୍ୟାକୁ ନିୟନ୍ତ୍ରଣ କରିବା ବ୍ୟତୀତ ଅନ୍ୟ ଉପାୟ କିଛି ନାହିଁ । ଜନସଂଖ୍ୟା ଆଜି ତେଣୁ ଏକ ନୂତନ ପ୍ରଗତିଶୀଳ ଶିକ୍ଷା ଭାବରେ ଦେଖା ଦେଉଛି । ସାମାଜିକ ଓ ସାଂସ୍କୃତିକ ଭିତ୍ତିରେ ଜନସଂଖ୍ୟା ସମସ୍ୟାର ପରୀକ୍ଷା ଓ ପର୍ଯ୍ୟାଲୋଚନାକରି ତାର ଆଶୁସମାଧାନ କରିବାକୁ ପଡ଼ିବ । କେବଳ ପରିବାର ବା ଜନ୍ମନିୟନ୍ତ୍ରଣ ଦ୍ୱାରା ଏହା ସମ୍ଭବ ହେବନାହିଁ । ଗବେଷଣା ଦ୍ୱାରା ବିଭିନ୍ନ ଦେଶର

ସେମାନଙ୍କ ରୁଚି, ନୀତି, ଚଳଣି, ଆଗ୍ରହ, ବ୍ୟବହାର ଓ ମୂଲ୍ୟବୋଧ ଜାଣି ସେହି ଅନୁସାରେ ପନ୍ଥା ସ୍ଥିର କରିବାକୁ ପଡ଼ିବ । ସମାଜର ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି ଘଟାଇବାକୁ ହେବ ।

ଏହି ପରିସ୍ଥିତିରେ ଭବିଷ୍ୟତର ନାଗରିକ ତଥା ଜାଗ୍ରତ ଯୁବ ସଂପ୍ରଦାୟର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ତେଣୁ ୧୯୭୦ ମସିହାରେ ସ୍ୱାସ୍ଥ୍ୟସଚିବମାନଙ୍କର ଏକ ସମ୍ମିଳନୀରେ ସ୍ଥିର ହୋଇଥିଲା ଯେ ଶିକ୍ଷକ ତାଲିମ କେନ୍ଦ୍ର, ମାଧ୍ୟମିକ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମରେ ଜନସଂଖ୍ୟା ଶିକ୍ଷା ପ୍ରଚଳନ କରାଯାଉ । ବମ୍ବେରେ ପ୍ରତିଷ୍ଠିତ ଜନସଂଖ୍ୟା ଶିକ୍ଷା ଓ ଗବେଷଣା କେନ୍ଦ୍ର ମାଧ୍ୟମରେ ଭାରତ ଓ ଏସିଆର ଜନସଂଖ୍ୟା ଯୋଜନା ଓ ନୀତି ପ୍ରଣୟନ ପାଇଁ ଆବଶ୍ୟକ ତଥ୍ୟ ସଂଗ୍ରହ କରିବେ ଓ ଜନସଂଖ୍ୟା ବିଶେଷଜ୍ଞ ପ୍ରସ୍ତୁତ ହେବେ । ଯେଉଁ ଜନସଂଖ୍ୟା ଶିକ୍ଷା ଅଳ୍ପ କେତେକ ବିଶ୍ୱବିଦ୍ୟାଳୟରେ ଅର୍ଥନୀତି ଓ ନୃତତ୍ତ୍ୱ ବିଭାଗର ପାଠ୍ୟକ୍ରମରେ ଏକ ଅଂଶ ହୋଇଥିଲା, ତାହା ଆଜି ଏକ ଉନ୍ନତ ବିଜ୍ଞାନ ରୂପେ ପ୍ରତିଷ୍ଠିତ ହୋଇଛି । ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଜନସଂଖ୍ୟା ପାଇଁ ଏକ ସ୍ୱତନ୍ତ୍ର ବିଭାଗ ଗଠିତ ହୋଇ ଶିକ୍ଷକ ତାଲିମ, ଗବେଷଣା ଓ ପ୍ରକାଶନ କ୍ଷେତ୍ରରେ ବିଭିନ୍ନ ପଦକ୍ଷେପ ନିଆଯାଉଛି ।

ନିଜେ ସଚେତନ ହେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ଏହି ଜନସଂଖ୍ୟା ସମସ୍ୟା ସଂପର୍କରେ ସତର୍କ କରାଇବା ଯୁବକ ଯୁବତୀମାନଙ୍କର କର୍ତ୍ତବ୍ୟ । ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଦେଶବାସୀଙ୍କୁ ଜନସଂଖ୍ୟା ବିସ୍ଫୋରଣର ବିଷମୟ ପରିଣତି ବିଷୟରେ ଜଣାଇ ଏ ପରିବାର ନିୟନ୍ତ୍ରଣ ଦିଗରେ ସେମାନଙ୍କୁ ଆଗେଇନେବା ଉଚିତ । ସରକାରଙ୍କ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମରେ ସହଯୋଗ କରିବା ସେମାନଙ୍କର ପରମ କର୍ତ୍ତବ୍ୟ। ଦେଶରେ ସବୁଜ ବିପ୍ଳବ ମାଧ୍ୟମରେ ଖାଦ୍ୟ ଉତ୍ପାଦନ ବୃଦ୍ଧି କରିବା ନିତାନ୍ତ ଦରକାର । ଯାନ୍ତ୍ରିକ ତଥା ବୈଜ୍ଞାନିକ ଉପାୟରେ ଜାତୀୟ ବିକାଶମୂଳକ ସମସ୍ତ କାର୍ଯ୍ୟକ୍ରମରେ ସେମାନେ ସକ୍ରିୟ ଅଂଶ ଗ୍ରହଣ କରିବା ବାଞ୍ଛନୀୟ । ଗ୍ରାମାଞ୍ଚଳ ପାଇଁ ଯଥେଷ୍ଟ ସଂଖ୍ୟକ ଡ଼ାକ୍ତର, ଶିକ୍ଷକ ଓ କର୍ମୀ ନିତାନ୍ତ ଆବଶ୍ୟକ । ତେଣୁ, କେନ୍ଦ୍ର ସରକାର ଡ଼ାକ୍ତରୀ ପାସ କରୁଥିବା ଛାତ୍ର ଛାତ୍ରୀମାନଙ୍କ ପାଇଁ ଦୁଇଟି ବିଷୟ ବାଧ୍ୟତାମୂଳକ କରୁଛନ୍ତି । ପ୍ରଥମ ହେଲା ସେମାନେ ଅନ୍ୟୁନ ଛଅମାସ ପାଇଁ ଗ୍ରାମାଞ୍ଚଳରେ କାର୍ଯ୍ୟ କରିବେ ଏବଂ ଦ୍ୱିତୀୟରେ ପରିବାର ନିୟନ୍ତ୍ରଣରେ ତାଲିମ ପାଇବେ ।

ଜନସଂଖ୍ୟା ବୃଦ୍ଧିର କୁପରିଣତି ବିଷୟରେ ଜନସାଧାରଣଙ୍କୁ ଜଣାଇ ସେମାନଙ୍କ ମନରୁ ଯୁଗଯୁଗର ଅନ୍ଧବିଶ୍ୱାସ ଓ ଅଜ୍ଞତା ଦୂର କରି ସମାଜରେ ଏକ ବାଞ୍ଛିତ ବିପ୍ଳବ ଆଣିବା ଦିଗରେ ଯୁବ ସଂପ୍ରଦାୟ ନେତୃତ୍ୱ ନେବା ଉଚିତ। ତାହା ହୋଇ ପାରିଲେ ଆମ ଦେଶ ଯେଉଁ ବିରାଟ ଓ ଭୟାବହ ସଂକଟ ଆଡ଼କୁ ଦ୍ରୁତ ଗତିରେ ଆଗେଇ ଚାଲିଛି, ସେଥିରୁ ନିଶ୍ଚୟ ତାକୁ ରକ୍ଷା କରିହେବ ଏବଂ ଏକ ସୁଖୀ ଓ ସମୃଦ୍ଧ ସମାଜ ଗଠନର ସ୍ୱପ୍ନ ସାର୍ଥକ ହୋଇପାରିବ ।

Reader, SCERT, Orissa
Bhubaneswar



ପାରଳା ମହାରାଜାଙ୍କ ଜୟନ୍ତୀ ଉତ୍ସବରେ, ମୁଖ୍ୟ ସଚେତକ ଶ୍ରୀ ମନମୋହନ ମାଝୀ।

# ମାଟି ନ ଜାଣି

ଶ୍ରୀ ସଚ୍ଚିଦାନନ୍ଦ ପାଇକରାୟ

ପଧାନପଦା ଗାଁ । ଶହେ କି ଛ' କୋଡ଼ି ଘର । କେଉଁ କାଳୁ ବରଗଛଟିଏ ଶାଖାପ୍ରଶାଖା ମେଲି ଗାଁ ମୁଣ୍ଡରେ ଠିଆ ହୋଇଛି । କେତୋଟି ଓହଳ ମାଟି ଭିତରେ ପଶି ଖମ ପରି ଠିଆ ହୋଇଛନ୍ତି । ଆଉ କେତୋଟି ଓହଳିଛି । ଟୋକାଏ ସେଥିରେ ଦୋଳି ଖେଳନ୍ତି । ଖରାବେଳେ ସେଠି ବୁଢ଼ାମାନଙ୍କର ସ୍ଥଳେ ପଶାଖେଳ ।। ଝିଅମାନେ ସଞ୍ଜବେଳେ, ବାଉଁଡ଼ି, ବୋହୂଷ୍ଟେରି ଓ ଲୁଚକାଳି ଖେଳନ୍ତି ! ସକାଳୁ ସଞ୍ଜ ଯାଏ ବରଗଛ ଦେଖୁଥାଏ ନାନା ଖେଳ-କୌତୁକର ସୁଅଙ୍ଗ ।

ଅଶିଣ ମାସର ସଞ୍ଜ ପହର । ଟୋକାମାନଙ୍କର ଖେଳକୁଦ ଶେଷ ହୋଇଗଲାଣି । ଖେଳ ଦେଖୁଥିବା ବୟସ୍କ ଚାଷୀ କେତେଜଣ କାଠ ଗଡ଼ ଉପରେ ବସି କଥା ଜମାଇ ଦେଇଛନ୍ତି । କଇଁଫୁଲିଆ ଜହ୍ନ ଆଲୁଅ ବିଛି ହୋଇ-ପଡ଼ିଛି ଛାଇ ଛାଇକା ଅନ୍ଧାର ଭିତରେ ।

ହଜାରି ଜେନା— କଣ କହିବି ଭାଇ, ମୋ ଜମିକୁ ଇମିତି ସାରୁଆ କରିଦେଲି ଯେ ସୁପର ବି ସୁରିଆ ନଦେଲେ ଜମା ଶୁଣୁନି ।

ଜଗୁ ସୁନ୍ଦରା—ମୁଁ ମଧ୍ୟ ଲିଙ୍ଗୁ ଭାଇକୁ ଦେଖି, ଫି' ବର୍ଷ ବଜାରରୁ କିଣି ଅଣି ସେଗୁଡ଼ାକ ଅଜାଡ଼ିଲି ଯେ, ମାଟିଟକ ଭାଇ ଲୁହା ସମାନ ଟାଣ ହୋଇଗଲାଣି । ଲୁହା ଲୁହିକି ଗଲା ଶୁଖରେ ତରା ଦିଟା ଲଙ୍ଗଳ ଦିଦି ଫାଳ ହୋଇଗଲା !

ଦୁଃଶା ପଧାନ— ହଁ ଭାଇ, ଏବର୍ଷ ଦେଉଁଥରେ ମୋ ଲୁହାଟା ମଧ୍ୟ ଖଣ୍ଡ ଖଣ୍ଡ ହୋଇଗଲା । ବଳଦଗୁଡ଼ାକ କଣ କମ୍ ହାଲିଆ ହେଉଛନ୍ତି, ଦିମାଣ ଜାଗାରେ ପରା ମାଡ଼େ ଚଷି ହେଉନି !

ଓଘର ପଧାନ—ହଁ ଭାଇ, ନୂଆ ନୂଆ କେତେଟା ବର୍ଷ ଯାହା ଦ୍ୱିଗୁଣ ଫସଲ ଆଦାୟ କଲେ । ହେଲେ ଅସ୍ତେ ଅସ୍ତେ ଜମିର ଦଳ ଭାଙ୍ଗିଗଲା !

ହଜାରି ଜେନା—କଣ କହିବି ଭାଇ ! ମାଟିକୁ ଛୁଇଁଦେଲେ ଖାଲି କାନ୍ଦ ମାଡୁଛି । ମାଟି ଯେମିତି କହୁଛି—"କି ପୋଡ଼ ପାଡ଼ ଜିନିଷଗୁଡ଼ାକ ବଜାରରୁ କିଣି ଆଣି ମୋତେ ଖାଇବାକୁ ଦେଲୁ ଯେ, ମୋ ମାଉଁସଟକ ଝୁଣି ଖାଇଲାଣି । ରକତ ଶୋଷି ନେଲାଣି" । ମୁଁ ଭାଇ, ଗତବର୍ଷ ସେଗୁଡ଼ାକ ଆଉ ଦେଲି ନାହିଁ ! କଣ କହିବି, ଫସଲ ବି ଅଧା ପାଇଲି ନାହିଁ ।

ଜଗୁ ସୁନ୍ଦରା—ସତରେ ଭାଇ, ଜମିକୁ ଅନାଇଦେଲେ କିମିତି କିମିତି ଲାଗୁଛି ! ସତେ ଯିମିତି ଜମି ଦେହରେ ଟୋପାଏ ବି ରକତ ନାହିଁ । ସେ ବୁଢ଼ୀ ହୋଇଗଲାଣି,

ଓଘର ପଧାନ—କିନ୍ତୁ ଲିଙ୍ଗୁ ଭାଇ ତ ଢେର ଆଦାୟ କରୁଛି ! ତା ଜମିତ କାହିଁ ବୁଢ଼ୀ ହୋଇ ଯାଉନାହିଁ ? ଫି' ବର୍ଷ ତା କ୍ଷେତରେ ଅଜାଡ଼ି ହୋଇ ପଡୁଛନ୍ତି ଲକ୍ଷ୍ମୀ !

ଜଗୁ ସୁନ୍ଦରା—ବଡ଼ ଲକ୍ଷ୍ମୀବନ୍ତିଆ ଜମି ଖଣ୍ଡିଏ ପାଇଛ ତ ! ସଇଥିପାଇଁ ତାର ସିମିତି ହେଉଛି !

ହଜାରି ଜେନା—ମୁଁ ତ ଅଲକ୍ଷଣା ଜମି ଖଣ୍ଡିଏ ପାଇଛି । ସେତେ ଖୁଆଇଲେ ପିଆଇଲେ କଣ ହେବ ?

ଜଗୁ ସୁନ୍ଦରା—ଆମ କପାଳକୁ ସବୁ ସିମିତି ଫଳୁଛି ଲଲ !

ଓଘର—ତିନିବର୍ଷ ହେଲା ମୁଗ ଫସଲର ଦେଖା ନାହିଁ ! କେଉଁ ବର୍ଷ ଗଛ ଉଠି ମରି ଯାଉଛି ତ, କେଉଁ ବର୍ଷ ଫୁଲ ଫୁଟି ଝଡ଼ି ଯାଉଛି ।

ଦୁଃଶା—ଯୁଗ ଗୁଣେ ଏସବୁ ହେଉଛି ଭାଇ ! କଳି ଯୁଗରେ ପରା ସବୁ ଗୋଳିଆ !

ହଜାରି—ମୁଁ ଭାବୁଛି—ଏ ଶୁଖବାସ ଆଉ ମୋ ଦେଇ ହେବ ନାହିଁ । ଜମିଟକ ବିକାଉଙ୍ଗା କରିଦେଇ ଛୋଟ ଜାତିଆ ଦୋକାନ ଖଣ୍ଡିଏ ଦେବି । ସେଇଠୁଁ ମୋ କପାଳରେ ଯାହା ଥିବ !

ଜଗୁ ସୁନ୍ଦରା—ସେମିତି ଅଲକ୍ଷଣା କଥା ତୁଣ୍ଡରେ ଧରନା ଲଲ ! ମାଟି ପରା ଆମ ମା' ! ମା'କୁ କଣ କିଏ ବିକେ ?

ଓଘର–ତୁମେ ସବୁ ଏତେ ବ୍ୟସ୍ତ ହୁଅନା ଭାଇ । ଧୈର୍ଯ୍ୟ ଧର । କାଲି ଗ୍ରାମସେବକ ବାବୁଙ୍କର ଆମ ଗାଁକୁ ଆସିବା ପାଳି, ତାଙ୍କୁ ଆମ ଦୁଃଖ କହିବା ।

ହଜାରି–କଣ କରିଦେବେ ସେ ? ସେ କଣ ଆମ ଖେତରେ ସୁନା ଫଳାଇ ଦେବେ ନା ଆମ କପାଳକୁ ବଦଳାଇ ଦେବେ !

ଓଘର–ନହେଲେ କଣ ହେଲା ? କିଛି ହେଲେ ତ ଜାଣି ଥିବେ ! ଗୁଣ ଅଛି ବୋଲି ସିନା ସରକାର ଏଠିକି ପଠାଉଛନ୍ତି !

ପରଦିନ ଗ୍ରାମସେବକ ବାବୁ ଆସିଲେ । ଚାଷୀମାନେ ସବୁ କଥା ଜଣାଇଲେ । ଗ୍ରାମସେବକ ବାବୁ କହିଲେ– ଆପଣମାନେ ତ ଆମକଥା ମାନୁ ନାହାନ୍ତି । ମନଇଛା କାରବାର କରୁଛନ୍ତି !

ଜମ୍ବୁ–ଆମେତ ଆଜ୍ଞା କହୁଥିଲୁ, ଆମର ଏ ଗୋବର ପାଉଁଶ ଛାଡ଼ି ସେ ବିଦେଶୀ ସାର ଦେବୁ ନାହିଁ ବୋଲି ! ଲକ୍ଷ୍ମୀ କୋପ କରିବେ ! ଆପଣଙ୍କ କଥା ବି ଶୁଣିଲୁ । ସତେକୁ ସତ ଲକ୍ଷ୍ମୀ କୋପ କଲେ । ଏବେ କିମିତି କହୁଛନ୍ତି ଯେ ଆପଣଙ୍କ କଥା ମାନିଲୁ ନାହିଁ ବୋଲି ?

ଗ୍ରାମସେବକ–ମୁଁ କଣ କହୁଥିଲି ଗୋବର ଖତ ଆଦୌ ନ ଦେଇ କେବଳ ବିଦେଶୀ ସାର ଦେବାକୁ ? ଯେମିତି ଦେଖିଲେ, ସେଇ ସାର ଦେବାରୁ ଦିଗୁଣ ଫଳୁଛି, ସେଇଠୁଁ ଖାଲି ସେଇ ସାର ଅଜାଡ଼ିଲେ ! ଗୋବରକୁ ଜାନିଲେ ! ଫଳରେ ଫସଲ କମିଲା ମାଟି ଦୁର୍ବଳ ହେଲା ।

ଦୁଃଖୀ–ଆମେ ତାହେଲେ କଣ କଣ କରିବୁ, ଠିକେ ଠିକେ କହୁନାହାନ୍ତି । ଆମେ ତ ମୂର୍ଖ ଲୋକ । ଭଲ କରି ବୁଝାଇ ଦିଅନ୍ତୁ ।

ଗ୍ରାମସେବକ–ଏ ବିଷୟରେ ଅନେକ କଥା କହିବାର ଅଛି । ଗାଁର ସବୁ ଭାଇଙ୍କୁ ଡାକ । ମଣ୍ଡପରେ ବସିବା । ଆଲୋଚନା କରିବା ।

ଜମ୍ବୁ ସୁନ୍ଦରା, ଓଘର ପଧାନ, ହଜାରୀ ଜେନା ଘରଘର ବୁଲି ସମସ୍ତଙ୍କୁ ଡାକି ଆଣିଲେ । ମଣ୍ଡପରେ ସଭା ବସିଲା । ଗ୍ରାମ ସେବକ ବାବୁ ଠିଆ ହୋଇ କହିଲେ–

"ଭାଇମାନେ, ପ୍ରଥମେ ଆପଣମାନେ ଆମରି ଦେଶର କାରଖାନାରୁ ତିଆରି ସାରକୁ ବିଦେଶୀ ସାର କହି ନାକ ଟେକିଲେ । ଭାବୁଥିଲେ ତାହାଦ୍ୱାରା ମାଟି ଅପବିତ୍ର ହୋଇଯିବ । କିନ୍ତୁ ଯେତେବେଳେ ଦେଖିଲେ ଯେ ଅନ୍ୟମାନେ ତାହାଦ୍ୱାରା ଅଧିକ ଅମଳ କରୁଛନ୍ତି, ସେଇଠୁ ଆପଣମାନେ ମନଇଛା ଜମିରେ ଢାଳିଲେ । ନିଜ ନିଜର ବାଡ଼ିଖତକୁ ଅବହେଳା କଲେ । କିନ୍ତୁ କେଉଁ ସାରକୁ କେତେ ପରିମାଣରେ ଦେବେ ତାହା ଜାଣି ପାରିଲେ ନାହିଁ । ଜମି ଖରାପ ହେଲା, ଫସଲ କମିଲା ।

"ମନଦେଇ ଏଥର କିଛିଏ ଶୁଣନ୍ତୁ । ସାଧାରଣ ଫସଲ ପାଇଁ ମୋଟାମୋଟି ତିନିପ୍ରକାର ସାର ଦରକାର । ସେଗୁଡ଼ିକ ହେଲା ନାଇଟ୍ରୋଜେନ ସାର, ପଟାସ୍ ସାର ଓ ଫସଫରସ୍ ସାର ।

"ପଶୁପକ୍ଷୀଙ୍କ ମଳ, ମୂତ୍ର, ମାଂସ, ରକ୍ତ ତଥା ଗଛର ଡାଳ, ପତ୍ର, ଫୁଲ, ଫଳରେ ଏହି ସାର ଥାଏ । ଜଡ଼ା, ରାଶି, ସୋରିଷ, ଚିନାବାଦାମ ପ୍ରଭୃତି ତେଲ ପିଡ଼ିଆରେ ଏହା ବେଶି ଥାଏ । ଏହି ସବୁ ପଦାର୍ଥ ପଚିସଡ଼ି ସାରରେ ପରିଣତ ହେଉଥିବାରୁ ଏହାକୁ ପଚସାର କହିପାରିବା । ବଜାରରୁ କିଣୁଥିବା ଏମୋନିଆ, ୟୁରିଆ ଓ ନାଇଟ୍ରେଟ୍ ସାରରେ ଏହା ବହୁତ ଥାଏ ।

"ଏହିସାର ଗଛର ମୂଳ, କାଣ୍ଡ, ପତ୍ର ଗଠନ କରେ । ଏହାର ଅଭାବରେ ଗଛ ବଢିପାରେ ନାହିଁ । ପତ୍ରର ସବୁଜ ରଙ୍ଗ ନଷ୍ଟ ହୋଇଯାଏ । ଧାନଗଛରେ ଅଧିକ ପିଲ ବାହାରେ ନାହିଁ । କିନ୍ତୁ ଫୁଲ ଫଳ ଉତ୍ପନ୍ନ କରିବା ଶକ୍ତି ଏହି ସାରର ନାହିଁ । ସେଥିପାଇଁ ଖତିଆରି ସ୍ଥାନମାନଙ୍କରେ କଖାରୁଗଛ ବା ଧାନଗଛ ଜୋରରେ ବଢ଼ିଯାଏ, କିନ୍ତୁ ବେଶି ଫଳ ଧରେ ନାହିଁ ।

"ଦ୍ୱିତୀୟ ପ୍ରକାରର ସାର ହେଲା ପଟାସ ସାର । ଏହା ଦ୍ୱାରା ଗଛର ଶିରାପ୍ରଶିରା ମଜବୁତ ହୁଏ । ଗଛର ଉତ୍ପାଦିକା ଶକ୍ତି ବଢେ । ଏହାର ଅଭାବରେ ଫୁଲଫଳର ସଂଖ୍ୟା କମିଯାଏ । ଜମିରେ ଏହିସାର ବଢାଇବା ପାଇଁ ମ୍ୟୁରିଏଟ୍ ଅଫ ପଟାସ, ଓ ସଲଫେଟ୍ ଅଫ ପଟାସ କିଣିଆଣି ବ୍ୟବହାର କରିପାରିବେ ।

"ଏହାଛଡ଼ା ଆମେ ପଟାସ୍ ସାର ପାଇବା ବିଭିନ୍ନ ମାର୍ଗ ଅଛି । ତେଣୁ ଏହାକୁ ପାଉଁଶସାର ମଧ୍ୟ କୁହାଯାଇଥାଏ । କଅଁଳିଆପତ୍ର, ଅଶିପତ୍ର, ବର୍ଷାଦିନେ ଜନ୍ମୁଥିବା ବଣୁଆ ଘାସ ଗଛ, ପୋକଶୁଙ୍ଗା ଆଦି ଅନାବନା ଗଛମାନଙ୍କରେ ଏହିସାର ଥାଏ । ଏହାଛଡ଼ା କଦଳୀପତ୍ର, କଖାମଞ୍ଜି, ମକାଭଣ୍ଡା, ଆଖୁଖଣ୍ଡା, ମୁଗ ମଇନା ପ୍ରଭୃତିରେ ଏହି ସାର ଥାଏ । ଏଗୁଡ଼ିକୁ ପୋଡ଼ି ପଟାସ ସାରରେ ପରିଣତ କରାଯାଇପାରେ, କିନ୍ତୁ ପୋଡ଼ି ଦେବା ଦ୍ୱାରା ସେଥିରେ ଥିବା ନାଇଟ୍ରୋଜେନ ସାର ନଷ୍ଟ ହୋଇଯାଉଥିବାରୁ ଏଗୁଡ଼ିକୁ ପଚାଇ ଦେଲେ ଉଭୟ ସାର ମିଳ ପାରିବ ।

"ଏହିସାର କିନ୍ତୁ ଗଛରେ ଫୁଲବଣ୍ଡି କରି ଛାଡ଼ିଦିଏ । ଏଗୁଡ଼ିକୁ ବଡ କରିବା ଓ ହୃଷ୍ଟପୁଷ୍ଟ କରିବା କାର୍ଯ୍ୟ ଫସ୍‌ଫରସ୍ ସାରର । ଏହି ସାର ଗଛକୁ ରୋଗମୁକ୍ତ କରେ । ଚେରର ଖାଦ୍ୟ ସଂଗ୍ରହ ଶକ୍ତି ବଢାଏ । ଗଛର ଅନାବଶ୍ୟକ ବୃଦ୍ଧିକୁ କମାଇ ଫଳ ଧାରଣ ଶକ୍ତି ବଢାଇ ଦିଏ । ଏହା ରବି ଫସଲକୁ ପୋକ ଦାଉରୁ ରକ୍ଷା କରେ । ଆପଣମାନେ ଗତବର୍ଷ ହେମ୍ବା ରବି ଫସଲ ନ ପାଇବାର କାରଣ ହେଲା ପଟାସ ଓ ଫସ୍‌ଫରସ୍ ସାରର ଅଭାବ ।

"ଫସ୍‌ଫରସ୍ ସାର ବିଭିନ୍ନ ଜୀବଜନ୍ତୁଙ୍କ ହାଡରୁ ମିଳିଥିବାରୁ ଏହାକୁ ହାଡସାର ମଧ୍ୟ କୁହାଯାଏ । ଗେଣ୍ଡା, ଶାମୁକା, କଙ୍କଡା ଖୋଳରେ ମଧ୍ୟ ଏହି ସାର ଥାଏ । ଏଗୁଡ଼ିକୁ ସଂଗ୍ରହ କରି ଗୁଣ୍ଡ କରିଦେଲେ ଆପଣମାନେ ଏହିସାର ଯଥେଷ୍ଟ

ପାଇପାରିବେ । ବଜାରରେ ମିଳୁଥିବା ସାରର ନାମ ହେଲା ସୁପର ଫସ୍‌ଫେଟ ଏବଂ ଫସ୍‌ଫେଟ୍ ଅଫ୍ ଏମୋନିଆ ଇତ୍ୟାଦି ।

"ଏହି ତିନି ପ୍ରକାର ସାର ବିଷୟରେ ଜାଣିଲେ ଆପଣ-ମାନେ ନିଜେ ମଧ୍ୟ ପ୍ରାକୃତିକ ଉପାୟରେ ଏହିସବୁ ସାର ପ୍ରସ୍ତୁତ କରିପାରିବେ । ପ୍ରାକୃତିକ ଉପାୟରେ ପ୍ରସ୍ତୁତ ସାରର ଗୁଣ କିଣାସାରର ଗୁଣ ଅପେକ୍ଷା ଅଧିକ ଦୀର୍ଘସ୍ଥାୟୀ ଓ ଏହା ପ୍ରୟୋଗ କଲେ ଜମିର ମୌଳିକ ଗୁଣ ନଷ୍ଟ ହୁଏ ନାହିଁ । ଅବଶ୍ୟ କିଣା ସାର ପ୍ରୟୋଗ କଲେ ପ୍ରାକୃତିକ ସାର ଭଳିଭାବେ କାର୍ଯ୍ୟକାରି ହୁଏ । ଆପଣମାନେ ଦେଶୀ ସାର ସଂପୂର୍ଣ୍ଣରୂପେ ଛାଡ଼ି ଦେଇ କେବଳ କୃତ୍ରିମ ସାର ଦେବା ଦ୍ୱାରା ଜମିର ମୌଳିକ ଗୁଣ ନଷ୍ଟ ହେଉଛି । କ୍ରମେ କ୍ରମେ ଜମିର ଉତ୍ପାଦିକା ଶକ୍ତି କମୁଛି । ଆପଣଙ୍କ ଲିଙ୍ଗୁରାଜ ଉଭୟ ପ୍ରାକୃତିକସାର ଓ କୃତ୍ରିମସାର ମିଶ୍ରିତ କରି ପ୍ରୟୋଗ କରିବା ଫଳରେ ଭଲ ଅମଳ କରୁଛନ୍ତି । ତାଙ୍କରି ଜମି କେବଳ ଲକ୍ଷ୍ମୀବନ୍ତ ନୁହେଁ ଆପଣମାନେ ନିଜ ଜମିକୁ ମଧ୍ୟ ଏହି ଉପାୟରେ ଲକ୍ଷ୍ମୀବନ୍ତ କରିପାରିବେ ।

"ଆପଣମାନେ ନିଜ ହାତରେ କିପରି ଅଧିକ ଗୁଣଥିବା କଂପୋଷ୍ଟସାର ତିଆରି କରିବେ ତାହା ଶୁଣନ୍ତୁ । ୫ ମିଟର ଲମ୍ବ, ୨ମଟର ଓସାର ଏବଂ ୧ ମିଟର ଗଭୀରରେ ଗୋଟିଏ ଗୋଟିଏ ଗାତ ଖୋଳିବେ । ସେଥିରେ ଗୋବର, ଅଳିଆ, କାଠିକୁଟା, ପତ୍ର, ପାଉଁଶ ଇତ୍ୟାଦି ସମାନିଆ କରି ପକାଇବେ । ବାଡ଼ି ପଟେ ଥିବା ଅନାବନା ଗଛ ହାଣି, ବଗିଚାରୁ ଘାସ ଉପାଡ଼ି ମଧ୍ୟ ସେଥିରେ ପକାଇ ପାରିବେ । ୩ଭାଗରୁ ଏକଭାଗ ପୂରିଗଲେ ପଙ୍କ ଢାଳି ଦେବି ବା ଗୋମୂତ୍ର ସିଞ୍ଚି ଦେବେ । କିଛିଦିନ ପରେ ଅଳିଆ ସଢ଼ି ଯିବ, ତା ଉପରେ ପୁଣି ଅଳିଆ ଢାଳି ଆଉ ଏକ ଭାଗ ପୂର୍ଣ୍ଣ କରିବେ, ତା ଉପରେ ପଙ୍କ ମୂତ୍ର ଢାଳିବେ । ସେହିପରି ଅନ୍ୟ ଭାଗଟି ଅଳିଆ ଦ୍ୱାରା ପୂର୍ଣ୍ଣକରି ପଙ୍କ ମୂତ୍ର ଢାଳିବେ । ଆପଣମାନେ ଯେତେ ଇଚ୍ଛା ସେତେ ଗାତ ଖୋଳି କଂପୋଷ୍ଟ ତିଆରି କରି ପାରିବେ ।

"ହାଡ଼ଗୁଣ୍ଡ ଖତ ମଧ୍ୟ କିପରି ତିଆରି କରିବେ ଶୁଣନ୍ତୁ । ଅଧମିଟର ଲମ୍ବ, ଅଧମିଟର ଓସାର ଓ ଏକ ମିଟର ଗଭୀରର ଖାତ ଖୋଳି ଦେବେ । ଜୀବଜନ୍ତୁଙ୍କ ହାଡ଼, କଙ୍କଡ଼ାଖୋଳ, ଗେଣ୍ଡା ଖୋଳଆଦିରେ ଅଧା ପରିମାଣର କାଦୁଅ ପାଉଁଶ ମିଶାଇ ଏହିଖାତରେ ପକାଇ ମାଟି ଘୋଡ଼ାଇଦେବେ । ତାପରେ ମୂତ୍ର ଢାଳୁଥିବେ । ମାସକ ମଧ୍ୟରେ ହାଡ଼ଗୁଡ଼ିକ ସହଜରେ ଗୁଣ୍ଡ ହୋଇଯାଏ । ତାହାକୁ ଖାତରୁ ଖୋଳି ଆଣି ଢିଙ୍କିରେ କୁଟି ଦେଲେ ସଂପୂର୍ଣ୍ଣ ଗୁଣ୍ଡ ହୋଇଯିବ । ଏହାକୁ ଫସ୍‌ଫରସ୍ ସାର ରୂପେ ବ୍ୟବହାର କରାଯାଇ ପାରିବ । ହାଡ଼ଗୁଣ୍ଡ ଥରେ ଦେଲେ ୨ । ୩ ବର୍ଷ ପର୍ଯ୍ୟନ୍ତ ଏହାର ଗୁଣ ରହିପାରିବ । ଆପଣମାନେ କାଲିଠାରୁ କାମ ଆରମ୍ଭ କରି ଦିଅନ୍ତୁ । ଶୁଭସ୍ୟ ଶିଘ୍ରଂ ।

ସମସ୍ତଙ୍କୁ ନମସ୍କାର କରି ଗ୍ରାମସେବକ ବାବୁ ଚାଲିଗଲେ । ଚାଷୀମାନେ ନୂତନ ଉତ୍ସାହ ଏବଂ ଆଶା ନେଇ ନିଜ ନିଜ ଘରକୁ ଗଲେ ।

ପରଦିନ ସକାଳୁ ଚାଷୀମାନେ ନିଜ ନିଜ ବାଡ଼ି ପଟେ କଂପୋଷ୍ଟ ଖାତ ତିଆରି କରିବାକୁ ଲାଗିପଡ଼ିଲେ । ସ୍କୁଲ ପିଲାମାନେ ବାପା ଭାଇମାନଙ୍କର ନୂତନ କାଣ୍ଡ ଦେଖି ଭାବୁଥିଲେ କେବେ ନଥିବା କାମ ଆଜି ସମସ୍ତଙ୍କ ବାଡ଼ିପଟେ କାହିଁକି ହେଉଛି ? ସ୍କୁଲରେ ସାରଙ୍କୁ ପଚାରି ସବୁ ବୁଝିଗଲେ । ସାର ବି କହିଲେ– ଏହାଦ୍ୱାରା ଖତ ପରିମାଣ ବଢ଼ିବ । ଜମିରେ ଅଧିକ ଫସଲ ହେବ ଏବଂ ତା ସାଙ୍ଗକୁ ଗାଁ, ରାସ୍ତା ବାଡ଼ି, ପୋଖରୀ ବି ସଫା ହୋଇଯିବ । ମଶାମାଛି କମିଯିବେ ଓ ରୋଗ ପରିମାଣ କମିଯିବ ! ପିଲାମାନେ ଖୁସୀ ମନରେ ସ୍କୁଲରୁ ଫେରିଲେ ।

ପଧାନ ଗାଁର ଚାଷୀଙ୍କ ମନରେ ନୂତନ ଉତ୍ସାହ ସୃଷ୍ଟି ରହିଲା । ପ୍ରତିବର୍ଷ ସେମାନେ କଂପୋଷ୍ଟ ସାର ତିଆରି କରି ଜମିରେ ଦେଲେ । କି ପିଲା, କି ବୁଢ଼ା କି ଭୁଆସୁଣୀ ସମସ୍ତେ ଏଥିରେ ସହଯୋଗ କଲେ । ପ୍ରତି ବର୍ଷ ପ୍ରତି ପରିବାର ୨୦।୨୫ ଗାଡ଼ି ଖତ ଅଧିକ ପାଇଲେ ।

ଏବେ ଗାଁର ରାସ୍ତାକଡ଼, ପୋଖରୀ ହୁଡ଼ା, ଘରର ଭିତର ବାହାର ସବୁ ସଫା ସୁତୁରା । ରାସ୍ତା କଡ଼ରେ ବା ପୋଖରୀ ହୁଡ଼ାରେ କେହି ଆଉ ଝାଡ଼ା ଫେରିଲେ ନାହିଁ । ନିଜ ନିଜ କଂପୋଷ୍ଟ ଖାତ ଆଡ଼କୁ ଗଲା ସବୁ ମଇଳା । ଯେ ଯେଉଁଠି ଗୋବର ଲଣ୍ଡାଏ ପାଇଲା, ନେଇ ଦେଲା ଖାତକୁ । ବାଡ଼ି ବଗିଚାର ଘାସ ଉପାଡ଼ି ପକାଇଲେ ଖାତରେ । ନାଳ ନର୍ଦ୍ଦମାର ପଚା ମଇଳା ଗଲା ସେଠାକୁ । ପିଲାମାନେ ମଧ୍ୟ ଖାତ ପାଖରେ ମୂତ୍ର ତ୍ୟାଗକଲେ । ଭୁଆସୁଣୀ ମାନେ ରାତି ଅଧିଆ ବିଲମାଳକୁ ନ ଯାଇ କଂପୋଷ୍ଟ ଖାତ ଉପରେ କାମ ସାରିଦେଲେ । ଗାଁ ଗୋହିରିର ଅମରି ଗଛ ସଫା ହୋଇଗଲା । ଗାଁ ପୋଖରୀରେ ଦଳ ବୋଲି କିଛି ରହିଲା ନାହିଁ । କଣାକୁଞ୍ଚି ଯେଉଁଠି ଯାହା ଥିଲା ସବୁ ନିର୍ମଳ ହୋଇଗଲା । ବିଲରେ ନଡ଼ାମୂଳଟାଏ ସୁଦ୍ଧା ରହିଲା ନାହିଁ । ଏସବୁ ସାଙ୍ଗକୁ ଗାଁରୁ ମଶାମାଛି ବି ସଫା ହୋଇଗଲେ । କମେ ପାଖ ଅଞ୍ଚଳ ସହର ବଜାର ମଇଳା ମଧ୍ୟ ବୋହି ଆଣିଲେ ଶଗଡ଼ ଲଗାଇ ।

କାହାର କେତେଟା କଂପୋଷ୍ଟ ଖାତ ପୂର୍ଣ୍ଣ ହେଲାଣି ଚାଲିଲା କଥାବାର୍ତ୍ତା । ଗାଁ ମୁଣ୍ଡ ବରଗଛ ମୂଳରେ, ଗାଁପାଖ ପଡ଼ିଆର ଗୋରୁହାଡ଼ ମଧ୍ୟ ସଂଗ୍ରହ କରାଯାଇ ଫସ୍‌ଫରସ୍ ସାର ତିଆରି କରାଗଲା । ଅଣ୍ଡାଖୋଳ, କଙ୍କଡ଼ାଖୋଳ, ଗେଣ୍ଡା ଶାମୁକା ଖୋଳ ଗୋଟାଇ ଆଣି ଜମାହେଲା ହାଡ଼ସାର ଗାତରେ ।

ପ୍ରକୃତରେ କଂପୋଷ୍ଟ ଆଣିଦେଲା ପଧାନପଡ଼ା ଜୀବନରେ ଏକ ନବୀନ ଉନ୍ମାଦନା । ସତେ ଯେପରି କାହାର ମନ୍ତ୍ର ବଳରେ ପଧାନ ପଡ଼ା ଗାଁ । ଉପରେ ସ୍ୱର୍ଗରୁ ଖଣ୍ଡେ ସ୍ଥାନ ଛିଣ୍ଡି ପଡ଼ିଛି ।

ଯେ ମାଣେ ଜମିରେ ଢାଳୁ ଥିଲା ୩ ଗାଡ଼ି ଖତ, ସେ ଢାଳିଲା ୧୦ ଗାଡ଼ି । ବିଦେଶୀ ସାର ଏଥର ଯେ ଯେତେ ପକାଇଲି

ପଚାଇ ଥାଉ । କିନ୍ତୁ କୃତ୍ରିମ ସାର ଯେତିକି ଦରକାର କେବଳ ସେତିକି ପକାଇଲେ ।

ଧାନ ଫଳିଲା ୩ଗୁଣ, ରବି ଫସଲ ଆଉ କେବେ ଫେଲ ମାରିଲା ନାହିଁ । ମୁଗ ବିରି ଫସଲ ମେଣ୍ଟୁଆ କିମ୍ବା ଚୂହୁଡି ପାଗକୁ ଖାତିର କଲା ନାହିଁ । ମୁଗ କିଆରି ଶାଗ ପଟାଳି ପରି ଜନ ଜନିଆ ଦିଶିଲା । ପତ୍ର ପତ୍ରକେ ଅଜାଡ଼ି ଦେଲା ଛୁଇଁ ।

ସତରେ କେଉଁଠି ଥିଲା ଜମିଗୁଡ଼ିକର ଏତେ ଶକ୍ତି । ଜଗୁ ସୁନ୍ଦରାର ବୁଢ଼ା ଜମି ଏବେ ଭେଣ୍ଡିଆ ହୋଇ ଗଲାଣି । ମାଟିର ଶାଣ୍ଟିଆ ହାଡୁଆ ଦେହ ଏବେ ଆନୁଆଳି ଭୁଆସୁଣିର ଦେହ ପରି ଛନ୍ଦୁଣି-ନଚମ ।

ହଜାରି ଜେନା ଏବେ ଦୁଇ ପାହୁଣ୍ଡକୁ ପାହୁଣ୍ଡେ କରି ବାଟ ଚାଲୁଛି । ତା ସବୁଦିନିଆ ବିପଟ ଏବେ ମୋଟେଇ ଗଲାଣି । ତା ନିଶ ମୋଡ଼ା ଏବେ ଦେଖିବ କ'ଣ ?

ଜଗୁ ସୁନ୍ଦରା ଏବେ ବି ହଜାର ଦେଇ ଧଳା ବଳଦ ହଳେ କିଣିଛି ତାଙ୍କ ଗଳାରେ ପାଟ ଫୁଲି ବନ୍ଧା ଘଣ୍ଟି ଘାଗୁଡ଼ି ବାନ୍ଧି ଦେଲେଣି । ଶଗଡ଼ ବାହିଲା ବେଳେ ଗାଁ । ଦାଣ୍ଡରେ ତା ଛାତି ଫୁଲ ଦେଖିବ କ'ଣ !

ଗାଁରେ ହଳ କଣ ଦେଖିବ । ଶଗଡ଼ କ'ଣ ଦେଖିବ ! ଶଗଡ଼ିଆମାନେ ଗୀତ ବୋଲିବା ବନ୍ଦ କରି ଦେଇଥିଲେ । ଏବେ ପୁଣି ନୂତନ ସ୍ୱରରେ ଆରମ୍ଭ କରି ଦେଲେଣି । ବାଡ଼ୁଅ ଟୋକାଏ ନୂଆ ରସ ରସିଆ ଗୀତ ଭାଙ୍ଗି ନୂଆ ହଳୁଆ ଗୀତ ଗାଇଲେଣି । ପୁରୁଣା କାଳିଆ ଗୀତ ଆଉ ତାଙ୍କ ପସନ୍ଦକୁ ଆସୁନି ।

ଗାଁରେ ନାଟ ତାମସା, କାଳି ଯାତ, ଭୋଜି ଭାତ କେତେ କଣ ? ଓଘର ପଧାନ ହଜାରି ଜେନାକୁ କହୁଛି ଜମି ବିକି ଦୋକାନଦାରୀ ହେବୁ ପରାରେ ? ଜେନାଭାଇ କହୁଛନ୍ତି– ସେ ଦାରୀ ଫାରି କଥା ଆଉ କହନା ଭାଇ ! ଏ ଜନମ ମାଟିକି ଯଦି ବିକି ଦେଇଥାନ୍ତି; ଏବେ ଖାଲି ମୁଣ୍ଡକୁ କୋଡ଼ ଥାନ୍ତିରେ! ସତରେ ମାଟିକୁ ମା ବୋଲି ଆମେ ଚିହ୍ନି ନ ଥିଲେ । ସେ କଣ କେବେ ଅଲକ୍ଷଣୀ ହୋଇପାରେ ! ସେ ପରା ସ୍ୱୟଂ ଆଦିଶକ୍ତି । ତାରି ଗର୍ଭରୁ ପରା ସବୁ ଜାତ ! ଧନ ସଂପଦ, ଗଛ ବୃଛ, ଗୋରୁ ଗାଈ ମଣିଷ ପରା ତାଠୁ ଜନମ ହୋଇଛନ୍ତି ! ଆମେ ସିନା ନାଚି ନ ଜାଣି ଅଗଣାକୁ ଦୋଷ ଦେଉଥିଲେ । ତାକୁ ଯେତିକି ହେପାଜତ କରିବା ତା ଦେହରୁ ସେତିକି କ୍ଷୀର ଝରିବ । ଯାରି ଗର୍ଭରେ ସୁବର୍ଣ୍ଣ, ଯାରି ଗର୍ଭରେ ହୀରା, ଅଷ୍ଟରତ୍ନ ପରା ଯାରି ଗର୍ଭରେ । ଯାରି ଦେହରୁ ମଧୁ ଝରେ । ମାଷ୍ଟ୍ରେ ପରା କହୁଥିଲେ "ଯାରି ଭିତରେ ପୁଣି କେଉଁଠି ଅମୃତ ଛପି ରହିଛି ! ଆମେ ଖୋଜି ପାରୁନେ, ତେଣୁ ପାଇ ପାରୁନେ ।" ଏଇ ମା'ର ସେବା କରି ଆମେ ଉଦ୍ଧାର ପାଇବା ଏବଂ ଆମ ସପ୍ତ ପୁରୁଷକୁ ଉଦ୍ଧାର କରିବା । ଏଇ ମାଟିତ ଆମ ପାଇଁ ସ୍ୱର୍ଗ । ଏହାରି ସେବାରେ ଅମର ଜୀବନ ବିତି ଯାଉରେ ଓଘର ଭାଇ । ଜନମ ମାଟି ପରା ସରଗଠାରୁ ବଡ଼ ।



# ନିଶାଦ୍ରବ୍ୟ ସେବନ ଓ ଆଜିର ମାନବ ସମାଜ

ଅଧ୍ୟାପକ ପ୍ରଫୁଲ୍ଲ କୁମାର ମହାନ୍ତି

ରୋଗ ମୁକ୍ତି ନିମିତ୍ତ ଔଷଧ ଏକ ଅବ୍ୟର୍ଥ ପଦାର୍ଥ କିନ୍ତୁ ପ୍ରାଚୀନ ଇତିହାସରୁ ମନୁଷ୍ୟ କଷ୍ଟରୁ ଲାଘବ ପାଇବାପାଇଁ ଔଷଧ ବ୍ୟବହାରର ପ୍ରଚେଷ୍ଟା ଚଳାଇ ଆସିଛି । ଚେରମୂଳିଠାରୁ ଆରମ୍ଭ କରି ସାଧାରଣ ନିଶାଦ୍ରବ୍ୟ ପର୍ଯ୍ୟନ୍ତ ଅନେକ ଜିନିଷର କରାମତି ମଧ୍ୟ ଉପଲବ୍ଧି କରିପାରିଛି । କିନ୍ତୁ ଆଶ୍ଚର୍ଯ୍ୟର କଥା ହେଉଛି ଦୁରାରୋଗର କଷ୍ଟରୁ କ୍ଷାନ୍ତ ପାଇବାପାଇଁ ନିଶା ଦ୍ରବ୍ୟକୁ ମନୁଷ୍ୟ ସର୍ବୋତ୍କୃଷ୍ଟ ଔଷଧ ଭାବରେ ଖାଇ ଆସଛି । ଆଉ ମନ ଖୁସିରେ ବିବାହବ୍ରତ ଓ ଧର୍ମ ଦିବସ ଗୁଡ଼ିକରେ ସୋମରସ ପାନକରିବା କଥା ପୁରାଣ ତ ଭୁରି ଭୁରି ପ୍ରମାଣ ଦିଏ । ପୁରାଣ ଯୁଗର ସୋମରସ ପରି ଆଜିର ଗଞ୍ଜା, ଭାଙ୍ଗ ଓ ଚରସଆଦିର ବ୍ୟବହାର ଏକ ଅତି ସାଧାରଣ ସୌଖିନ ବ୍ୟବହାର୍ଯ୍ୟ ପଦାର୍ଥରେ ପରିଣତ ହୋଇଛି । ଏହା ପ୍ରତି ମନୁଷ୍ୟର ବୃଦ୍ଧି ଏତେ ପରିମାଣରେ ଯେ ଏହାକୁ "ସାମାଜିକ ଔଷଧ" କହିଲେ ଅତ୍ୟୁକ୍ତି ହେବନାହିଁ । ତେବେ "ଏଗୁଡ଼ିକ କଅଣ ଓ କିପରି ସଂଗୃହୀତ ହୋଇଥାଏ"—ଏକ ସାଧାରଣ ପ୍ରଶ୍ନ ।

ଉଦ୍ଭିଦ ବା ଭାଙ୍ଗ ଗଛ (Cannabis indica ଓ C. Sativa) ହିଁ ଗଞ୍ଜା, ଭାଙ୍ଗ ଓ ଚରସ୍ ଆଦି ନିଶା ଦ୍ରବ୍ୟର ଉତ୍ସ । ଏ ବୃକ୍ଷର ଜନ୍ମସ୍ଥାନ ହେଉଛି କେନ୍ଦ୍ର ଏସିଆ ; ମାତ୍ର ବର୍ତ୍ତମାନ ଏହା ବିଶ୍ୱର କ୍ରାନ୍ତି ମଣ୍ଡଳୀୟ ଓ ଉଷ୍ଣ ମଣ୍ଡଳୀୟ ଅଞ୍ଚଳରେ ମଧ୍ୟ ଦେଖାଯାଇଥାଏ ! ବାସ୍ତବିକ୍ ଏ ବୃକ୍ଷର କାଣ୍ଡରୁ ମିଳୁଥିବା ଟାଣ ତନ୍ତୁ (Fiber)ରୁ କାନଭସ୍, ଛଣି ଓ ଦଉଡ଼ି ଜାତୀୟ ସୂକ୍ଷ୍ମ ଜିନିଷ ପ୍ରଭୃତି ତିଆରି ହେବା ସଙ୍ଗେ ସଙ୍ଗେ ଏହାର ମଞ୍ଜିରୁ ଯେଉଁ ତେଲ ଉତ୍ପାଦିତ ହୁଏ ତାହା ବିଭିନ୍ନ ପ୍ରକାର ରଙ୍ଗ (Paints) ରେ ବ୍ୟବହୃତ ହୋଇଥାଏ । ମନୁଷ୍ୟ ପ୍ରକୃତିଦତ୍ତ ବସ୍ତୁରୁ ଏତେ ଉପକାର ପାଇମଧ୍ୟ ତାର ଅନେକ ଖରାପ ଜିନିଷକୁ ବ୍ୟବହାର ନ କରିବାକୁ ଭୁଲି ନ ଥାଏ । ଅର୍ଥାତ ଖରାପ ଜିନିଷ ଗୁଡ଼ିକ ପାଇ ତାର ସଂପୂର୍ଣ୍ଣ ସୁଯୋଗ ନେଇଥାଏ । ଏ ଗଛର ପତ୍ରଗୁଡ଼ିକୁ ଭାଙ୍ଗ ହିସାବରେ ବ୍ୟବହାର କରାଯାଇଥାଏ, ଯାହାକି ସର୍ବତ ବା ଥଣ୍ଡାଇତ୍ୟାଦି ବିଭିନ୍ନ ରୂପରେ ପିଆଯାଇ ଥାଏ । ଦ୍ୱିତୀୟତଃ ଗଛର ଫୁଲ ବା କଢ଼ ବା ଫଳ ହୋଇଥିବା ଅଂଶଟି ଗଞ୍ଜାରୂପେ ସିଗାରେଟ୍‌ପରି ଟଣାଯାଇଥାଏ ; ତଥା ବୃକ୍ଷରୁ ସଂଗୃହୀତ ଝୁଣା ବା ଅଠାଳିଆ ରସକୁ ଚରସ ବୋଲି କୁହାଯାଏ । ମାରିଜୁଆନା (Marijuana) ନାମକ ପଦାର୍ଥ ମଧ୍ୟ ଏ ଗଛର ଅନ୍ୟ ଏକ ସଂଗୃହୀତ ଦ୍ରବ୍ୟ । ଉପରୋକ୍ତ ତିନି ପ୍ରକାର ନିଶା ଦ୍ରବ୍ୟ ବ୍ୟତୀତ ଅଫିମ ହେଉଛି ଆଉ ଏକ ପଦାର୍ଥ ଅଫିମ ବୃକ୍ଷ (Papaver Somniferium) ରୁ ଶୁଖିଲା ରସ ହିସାବରେ ମିଳିଥାଏ । ଏ ରସ ବୃକ୍ଷର ଅପରିପକ୍ୱ ଫଳରୁ ସଂଗୃହୀତ ହୋଇଥାଏ । ଦ୍ରବ୍ୟଟି କଞ୍ଚା ଅବସ୍ଥାରେ ପିଚୁ ପରି କଳା ଓ ଅଠାଳିଆ ମଧ୍ୟ । ଏହିସବୁ ଦ୍ରବ୍ୟଗୁଡ଼ିକ ଅନେକ ବ୍ୟକ୍ତିଙ୍କର ଦୈନନ୍ଦିନ ବନ୍ଧୁ କହିଲେ ଚଳେ । କାରଣ ଏଗୁଡ଼ିକ ବ୍ୟତିରେକେ ଜୀବନ ଧାରଣ ଅସମ୍ଭବ ହୋଇ ପଡ଼ିଥାଏ ।

ତେବେ କଥା ହେଉଛି ମନୁଷ୍ୟ ନିଶାଦ୍ରବ୍ୟ ବୋଲି ଜାଣି ମଧ୍ୟ ଜ୍ଞାତ ସାରରେ ଏହାକୁ ବ୍ୟବହାର କରିବାର ତାତ୍ପର୍ଯ୍ୟ କଣ ? ଅବଶ୍ୟ ଏହାର ଉତ୍ତର ଅନେକ ହୋଇ ପାରେ । ପ୍ରଥମତଃ ସଙ୍ଗମେଳ, ଆତ୍ମୀୟ ଓ ସ୍ୱାଦ ଜାଣିବାର ଆକାଂକ୍ଷା ଇତ୍ୟାଦି ମୁଖ୍ୟ କାରଣ । ଦ୍ୱିତୀୟତଃ ନିଶାଦ୍ରବ୍ୟ ସେବନ ଇନ୍ଦ୍ରିୟ ଚରିତାର୍ଥ କରିବାର ଏକ ସୁନ୍ଦର ଉପାୟ ବୋଲି ଅନେକଙ୍କର ଧାରଣା । ତୃତୀୟତଃ ପାରିବାରିକ ପ୍ରଭାବ । ଅର୍ଥାତ ଗୋଟିଏ ପରିବାରର ଅଧିକାଂଶ ବ୍ୟବହାର କରୁଥିଲେ, ତାହାର କୁପ୍ରଭାବ ପିଲମାନଙ୍କ ଉପରେ ପ୍ରତିଫଳିତ ହୋଇଥାଏ । ଚତୁର୍ଥତଃ ଔଷଧ ନ ହେଲେ ମଧ୍ୟ ଔଷଧ ରୂପେ ବ୍ୟବହାର । କାରଣ ପୁରାତନ କାଳରୁ ମଧୁମେହ (Diabetes) ରୋଗରୁ ଆରୋଗ୍ୟ, କ୍ଷୁଧାବର୍ଦ୍ଧକ ଓ ପରିସ୍ରା ପଥର ସଂକ୍ରାମଣରୁ ରକ୍ଷା ପାଇବା ନିମିତ୍ତ ଏହାର ବ୍ୟବହାର ଚଳି ଆସିଛି । ଏପରିକି ଭାଙ୍ଗ ବ୍ୟବହାର ଦ୍ୱାରା ଅନେକ ବ୍ୟକ୍ତିଙ୍କର ଧାରଣା କୋଷ୍ଠକାଠିନ୍ୟ ରୋଗରୁ ଭଲ ହେବା ତଥା ଝାଡ଼ା ପରିଷ୍କାର ହେବା ଏପରି କେତେକ କୁସଂସ୍କାର ଭାବନାହିଁ ମନୁଷ୍ୟକୁ ନିଶାଦ୍ରବ୍ୟର ଶିକାର ହେବାକୁ ପଡ଼ିଥାଏ । ସର୍ବୋପରି ରାତ୍ରିରେ ସୁନିଦ୍ରା ଲକ୍ଷ୍ୟରେ ଆଉ କେତେକ ଭାଙ୍ଗରେ ଚିନି, ବିଭିନ୍ନ ପ୍ରକାର ମିଷ୍ଟାନ୍ନ ଦ୍ରବ୍ୟ ତଥା ସାପଗରଳ (Snake venom) ମିଶାଇ ସେବନ କରିଥାଆନ୍ତି । ଯାହା ହେଉନା କାହିଁକି, ଏହା ନିଶ୍ଚିତ ଏ ଦ୍ରବ୍ୟଗୁଡ଼ିକ ନିଶାର ମୁଖ୍ୟ କାରଣ ! ତେବେ ନିଶା ହେବା ପଛରେ କଣ ରହିଛି ?

ନିଶାଦ୍ରବ୍ୟଗୁଡ଼ିକରେ ଥିବା ରାସାୟନିକ ପଦାର୍ଥ ନିଶାର କାରଣ । ସେଥିରୁ ଭାଙ୍ଗ ଓ ଗଞ୍ଜାର ମୁଖ୍ୟ ଉପାଦାନ ହେଉଛି

କାନାବିନଲ୍ (Cannabinol) ଓ କାନା ବିଡ୍ରାୟଲ (Cannabidiol) । ମାତ୍ର ଅଫିମରେ ମର୍ଫିନ୍ (Morphine), ୧୦ ପ୍ରତିଶତ ଓ କୋଡ଼େଇନ୍ ୫ ପରସେଣ୍ଟ ମୁଖ୍ୟ ଭାଗ ବ୍ୟତୀତ ଥିବେଇନ୍ (Thebaine) ନାର୍କୋଟିନ୍ (Narcotene) ପାପାଭେରିନ୍ (Papaverine) ଓ ନାରସେଇନ୍ (Narceine) ଇତ୍ୟାଦି ଉପାଦାନ ଥିବାରୁ ନିଶାର ଉତ୍କଟତା ଜଣାପଡ଼ିଥାଏ । ପୂରାକାଳରେ ଯନ୍ତ୍ରଣାହୀନ ଔଷଧ ବାହାରି ନ ଥିବାରୁ ଏହାର ବ୍ୟବହାର ଯଥେଷ୍ଟ ପରିମାଣରେ ଥିଲା । ତେଣୁ ରୋଗୀ ଖାଇବା ପରେ କଷ୍ଟ ଅନୁଭବ ନ କରି ଆରାମରେ ଶଯ୍ୟାଶାୟୀ ହେଉଥିଲା ।

ଉପରୋକ୍ତ ଦ୍ରବ୍ୟଗୁଡ଼ିକର ବ୍ୟବହାର ଅନେକ ପ୍ରକାର ରୋଗର ସୂଚନା ଦେଇଥାଏ । ପ୍ରଥମତଃ ମସ୍ତିଷ୍କ (Brain) ଓ ଫୁସ୍ ଫୁସ୍ (Lungs) କୁ ପ୍ରଭାବିତ କରି ଉତ୍ତେଜନା ଆଣିଥାଏ । ଗଞ୍ଜାଧୂଆଁ ଟାଣିବା ସମୟରେ ତାହା ଫୁସ୍ ଫୁସ୍‌ରେ ବିଶୋଷିତ ହୋଇ ଘୁରିପଟେ କାର୍ବନର ଏକ ଆବରଣ ସୃଷ୍ଟି କରି କର୍କଟ ରୋଗ ସୃଷ୍ଟି କରିଥାଏ । ଅତ୍ୟଧିକ ପରିମାଣର ଭାଙ୍ଗ ଓ ଅଫିମ ଆଖିର ପତାକୁ ସଙ୍କୁଚିତ କରିଥାଏ । ଦୃଷ୍ଟିଶକ୍ତି କମାଇଥାଏ ଶ୍ୱାସକ୍ରିୟା ରୁଦ୍ଧ ହେବା ସଙ୍ଗେ ସଙ୍ଗେ ବାନ୍ତି ଦେଖାଇଥାଏ । ଭାଙ୍ଗ ଖାଇବା ପରେ ଶରୀରସ୍ଥ ଜଳୀୟ ଅଂଶ କମିଯିବା ଯୋଗୁଁ ଅତ୍ୟଧିକ ଶୋଷ ହୋଇଥାଏ ଓ ରୋଗୀ ଯେତେ ପାଣି ପିଇଲେ ମଧ୍ୟ ଶାନ୍ତି ହୁଏ ନାହିଁ । ତେଣୁ ଉଦର ଫୁଲିଯିବା ସଙ୍ଗେ ସଙ୍ଗେ ପ୍ରଳାପ କରିବାର ଦେଖାଯାଏ । ଗଞ୍ଜା ଓ ଚରସ୍‌ର ବ୍ୟବହାର ରକ୍ତରେ ଶର୍କରା (Blood glucose) ବୃଦ୍ଧି କରାଇ ବହୁବାର ପରିସ୍ରା ଦେଖାଇ ଥାଏ ଓ ଚକ୍ଷୁର ପୁତ୍ତଳି (Pupil)ର ଆକାର ଯଥେଷ୍ଟ ପରିମାଣରେ ବଢ଼ି ଯାଇଥାଏ । ସଂକ୍ଷେପରେ କହିବାକୁ ଗଲେ ନିଶାଦ୍ରବ୍ୟର ସେବନ ହିଁ ମନୁଷ୍ୟର ଭାରସାମ୍ୟ ନଷ୍ଟ କରିଥାଏ ଓ କ୍ରମଶଃ ଅଭ୍ୟାସର ଦାସ ଯୋଗୁଁ ଧ୍ୱଂସାଭିମୁଖେ ହୋଇଥାଏ । ତାର ମୂଳ କାରଣ ହେଉଛି ନିଶାଦ୍ରବ୍ୟର ଗୁଣ ଶରୀରରେ ଗୁଣସୂତ୍ର ଜନିତ ପରିବର୍ତ୍ତନ (Chromosomal Changes) ; ଯାହାର ପ୍ରଭାବ ବ୍ୟବହାର କରୁଥିବା ବ୍ୟକ୍ତି ଭଲ ଭାବରେ ଉପଲବ୍ଧି ନ କଲେ ମଧ୍ୟ ପରୋକ୍ଷରେ ତାହାର ଭବିଷ୍ୟତ ବଂଶଧରମାନଙ୍କ ପାଖରେ ପ୍ରତୀୟମାନ ହୋଇଥାଏ । ଶିଶୁମାନେ ବିକଳାଙ୍ଗ ହୋଇ ଜନ୍ମ ନିଅନ୍ତି !

ତେଣୁ ଏତେ ସବୁ ଅସୁବିଧା, ବିପଦ ତଥା ଶାରୀରିକ ଅସୁସ୍ଥତାଗୁଡ଼ିକ ଜାଣିଶୁଣି ବା ଆମର ଜ୍ଞାତସାରରେ କଅଣ ଭବିଷ୍ୟତକୁ ଅନ୍ଧକାର କରିଦେବା ବା ଭବିଷ୍ୟତକୁ କଳଙ୍କମୟ କରିଦେବା ଯୁକ୍ତି ଯୁକ୍ତ କି ? ସରକାର ନିଶା ନିବାରଣ ପାଇଁ ପ୍ରଚାର କରୁଛନ୍ତି; ସିଗାରେଟ୍ ବ୍ୟବହାର ନ କରିବା ପାଇଁ "Cigarette smoking is injuriohs to health" ବୋଲି ବୈଧାନିକ ସତର୍କତା ଆଣିଲେ ମଧ୍ୟ ବି ଅତ୍ୟାଧୁନିକ ଶିକ୍ଷିତ ଗୋଷ୍ଠୀ ଏହା ଏକ ସାମାଜିକ, ଆଧୁନିକ ବାଞ୍ଛା (Status symbol) ବୋଲି ମନେ କରନ୍ତି । ମାତ୍ର ଆଧୁନିକ ସଭ୍ୟତା ନାମରେ ସମାଜ ଅଗ୍ରସର ହେବା ଲକ୍ଷ୍ୟରେ ଆମେ କଅଣ ଏପରି କରିବା ଉଚିତ୍ କି ? ତେଣୁ ନିଜକୁ, ନିଜର ବଂଶକୁ, ନିଜର ସମାଜକୁ ତଥା ସର୍ବୋପରି ନିଜର ଦେଶକୁ ରକ୍ଷାକରିବାପାଇଁ ମାନବ ସମାଜ ନିଶାଦ୍ରବ୍ୟଠାରୁ ଦୂରରେ ରହି ସତତ ସତର୍କ ଓ ଚେଷ୍ଟିତ ହେବା ବାଞ୍ଛନୀୟ ।

ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର ୭୫୧୦୦୧ ।



# ତାରୁଣ୍ୟର ବର୍ଷ

ଶ୍ରୀ ନୃସିଂହ ପ୍ରସାଦ ଦେବ

ମାନବ ଜୀବନଚକ୍ର ଚାରୋଟି ଅବସ୍ଥାଦେଇ ଗତିକରେ । ଶୈଶବ, କୈଶୋର, ଯୌବନ ଓ ଜରା । ଏହି ଚାରୋଟି ଅବସ୍ଥା ମଧ୍ୟରୁ ଯୌବନ ବା ତରୁଣାବସ୍ଥା ମନୁଷ୍ୟର ସର୍ବଶ୍ରେଷ୍ଠ ଓ ଦୀର୍ଘସ୍ଥାୟୀ ସଂପଦ-କାଳ ରୂପେ ବିବେଚିତ । ଯୁବାବସ୍ଥାରେ ପରିଶ୍ରମ କରି ସେ ତାର ଭାଗ୍ୟ ନିୟନ୍ତ୍ରଣ କରିଥାଏ । କଠୋର ପରିଶ୍ରମର ସୁଫଳ ନିଜେ ଭୋଗ କରିବା ସଙ୍ଗେ ସଙ୍ଗେ ପରିଶେଷରେ ତାହା ଭବିଷ୍ୟତ ବଂଶଧର ତଥା ଦେଶ ଓ ଜାତି ପାଇଁ ଉଦ୍ଦିଷ୍ଟ ହୋଇଥାଏ । ଏହା ଏକ ପ୍ରକୃଷ୍ଟ ସମୟ । ଏ ସଂସାରର ଆବର୍ତ୍ତ ମଧ୍ୟରେ ପ୍ରତ୍ୟେକ ଜଣେ ଜଣେ ଶ୍ରମିକ । ଶ୍ରମବିନା ଜୀବନରେ ସଫଳତା ଆଶା କରିବା ବୃଥା । ଶ୍ରମହୀନ ମନୁଷ୍ୟ ସମାଜ ଚକ୍ଷୁରେ ହୁଏ ଅଥର୍ବ, ପଙ୍ଗୁ । ତରୁଣାବସ୍ଥାରେ ଜୀବନର ଅଭିଳାଷ ପୂରଣ ସକି ମନୁଷ୍ୟ ଯେଉଁ ସ୍ୱପ୍ନ ଦେଖେ, ନିଜର ପରିଶ୍ରମ, ଏକାଗ୍ରତା ଓ କର୍ମତତ୍ପରତା ଫଳରେ ସେ ସାଫଲ୍ୟର ପ୍ରାଚୁର୍ଯ୍ୟ ଲାଭ କରେ । ଆଜି ଆମ ଦେଶରେ କିମ୍ବା ଅନ୍ୟ ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ଯେଉଁ ପ୍ରଗତି ସାଧିତ ହୋଇଛି, ତାହା ଏକଦା ଥିଲା ଅତୀତର ସ୍ୱପ୍ନ । ଆମର ଯୁବ ସମାଜ ସମ୍ମୁଖରେ ଯେଉଁ ନବନିର୍ମାଣ ଯୁଗର ସ୍ୱପ୍ନ ପ୍ରତିଭାତ ହେଉଛି, ଆଗାମୀକାଲି ତାହିର ରୂପରେଖ ହେବ ସାଫଲ୍ୟର ପୂର୍ଣ୍ଣତା । କିନ୍ତୁ ଆଜିର ଯୁବସମାଜର ଆଶା ଆକାଂକ୍ଷା ସମ୍ମୁଖରେ ଅନେକ ପ୍ରତିବନ୍ଧକ ରହିଛି । ନିରୁତ୍ସାହିତ ବାସ୍ତବତା ଓ ଶୀଥିଳ ପରିବେଶ ତନ୍ମଧ୍ୟରେ ଅନ୍ୟତମ । ଜୀବନର ଲକ୍ଷ୍ୟ ସ୍ଥଳରେ ଉପନୀତ ହେବାକୁ ସେମାନେ କର୍ମାଭିମୁଖୀ ହେବା ପରିବର୍ତ୍ତେ ନିରାଶାବାଦୀ ହୋଇ ପଡୁଛନ୍ତି ।

ବିଶ୍ୱ ଯୁବ ସମାଜର ସମସ୍ୟାବଳୀର ଦୂରୀକରଣ ଉଦ୍ଦେଶ୍ୟରେ ଚଳିତ ୧୯୮୫ ବର୍ଷଟି ଆନ୍ତର୍ଜାତିକ ଯୁବ ସମ୍ବତ୍ସର ବା ତାରୁଣ୍ୟର ବର୍ଷରୂପେ ପାଳିତ ହେଉଛି । ଅଂଶ ଗ୍ରହଣ, ବିକାଶ ଓ ଶାନ୍ତି- ଏହି ତିନୋଟି ବିଷୟ ଉପରେ ଆନ୍ତର୍ଜାତିକ ସମ୍ବତ୍ସରର ସାରମର୍ମ ପର୍ଯ୍ୟବେସିତ । ଯୁବକ ଓ ମହିଳାମାନେ ସେମାନଙ୍କର ସମସ୍ୟା-ଗୁଡ଼ିକର ଦୂରୀକରଣ ନିମନ୍ତେ ବିଭିନ୍ନ ଯୁବ ଆଲୋଚନାରେ ଅଂଶ ଗ୍ରହଣ କରିବେ, ଭାବର ଆଦାନ ପ୍ରଦାନ କରିବେ ଓ ସମସ୍ୟାଗୁଡ଼ିକ ସଂପର୍କରେ ଗଭୀର ଅନୁଧ୍ୟାନ କରିବେ । ଏହା ଫଳରେ ଆଗାମୀ ଦିନଗୁଡ଼ିକରେ ସେମାନଙ୍କର ସ୍ୱପ୍ନର ସଫଳ ରୂପାୟନ ହେବ । ଅବଶ୍ୟ ଏଥିପାଇଁ ସାମାଜିକ ପରିବର୍ତ୍ତନ ଓ ବିଧି ପ୍ରଣୟନ ଏକାନ୍ତ ଆବଶ୍ୟକ ।

ଦେଶର ଅର୍ଥନୈତିକ ପ୍ରଗତି ପାଇଁ ଯୁବଗୋଷ୍ଠୀର ଦାନ ଯୁଗେ ଯୁଗେ ଅତୁଳନୀୟ । କୃଷି, ବାଣିଜ୍ୟବ୍ୟବସାୟ, କଳ-କାରଖାନା, ଦେଶରକ୍ଷା, ଖଣିଖାଦାନ ଓ ପାରିବାରିକ କାର୍ଯ୍ୟ କିମ୍ବା ଅନ୍ୟ ଯେ କୌଣସି କ୍ଷେତ୍ରରେ ଯୁବ ସମାଜର ଦାୟିତ୍ୱ ଅନସ୍ୱୀକାର୍ଯ୍ୟ । ସେମାନଙ୍କର ଆଦର୍ଶ କଠୋର ପରିଶ୍ରମ କରି କର୍ମ କରିବା । ବ୍ୟାପକ ଦୃଷ୍ଟିକୋଣରୁ ବିଚାର୍ଯ୍ୟ ଯେ ସମଗ୍ର କର୍ମ ପରିଧି ମଧ୍ୟରେ ଯୁବକମାନେ ହିଁ ଅଧିକ କର୍ମ କରିଥାନ୍ତି । ଯୁବ ସମାଜର ଶ୍ରମଶକ୍ତି ଉପରେ ବିଶ୍ୱର ସମସ୍ତ ବିକାଶଶୀଳ ରାଷ୍ଟ୍ରର ପ୍ରଗତି ସାଧିତ ହୋଇଥାଏ । ଏହା ସତ୍ତ୍ୱେ ବେକାରୀ ବୃଦ୍ଧି, ନିମ୍ନ ଜୀବନଧାରଣର ମାନ ଓ ସମ୍ବଳ ତଥା ସୁଯୋଗ ମଧ୍ୟରେ ତାରତମ୍ୟ ବହୁମାତ୍ରାରେ ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ପରିଲକ୍ଷିତ ହେଉଛି । ଫଳରେ ଯୁବଶକ୍ତିର ଅର୍ଥନୈତିକ ପରିସ୍ଥିତି ଅକ୍ଷୁଣ୍ଣ ରହୁଛି ଓ ଅସ୍ଥିରତା ମଧ୍ୟରେ ଗତି କରୁଛି । ସେମାନଙ୍କର ଶକ୍ତି ବେହିସାବି ଓ ମୂଲ୍ୟହୀନ ହୋଇ ପଡୁଛି ଏବଂ ଅର୍ଥିକ ପ୍ରଗତି କ୍ଷେତ୍ରରେ ସଫଳତା ହାସଲ କରିବା ତଥା ଦକ୍ଷ ସଂସ୍କୃତି ରକ୍ଷା କରିବା କଷ୍ଟସାଧ୍ୟ ହେଉଛି । ତେଣୁ, ଯୁବଶକ୍ତିର ନିର୍ଦ୍ଦିଷ୍ଟ ଆବଶ୍ୟକତା ଓ ପରିସ୍ଥିତିକୁ ଆଖି ଆଗରେ ରଖି ଉନ୍ନୟନ କାର୍ଯ୍ୟକ୍ରମ ଓ ନୀତି ନିୟମ ପ୍ରସ୍ତୁତ କରାଯିବା ଆବଶ୍ୟକ ।

ଯୁବକ ଓ ମହିଳାମାନଙ୍କୁ ବିକାଶଧାରା ବହୁ ପରିମାଣରେ ଉପେକ୍ଷା କରିଥାଏ । ସେମାନେ କ'ଣ କରୁଛନ୍ତି, ସେମାନଙ୍କର ଦକ୍ଷତା କେତେ ଓ ସେମାନଙ୍କ ଉପରେ ବିକାଶର ପ୍ରଭାବ କ'ଣ ଇତ୍ୟାଦି ବିଷୟରେ ସେମାନଙ୍କର ଉପଯୁକ୍ତ ଜ୍ଞାନ ନ ଥାଏ । କେତେକ କ୍ଷେତ୍ରରେ ଆମେ ଦେଖୁ ଯେ, ପରିବାରରେ ଶିଶୁଟିଏ ଜନ୍ମନେଲେ ପରିବାରର ଲୋକେ ନବଜାତ ଶିଶୁଟି ପ୍ରତି ଅଧିକ ଯତ୍ନଶୀଳ ହୋଇପଡ଼ନ୍ତି । କିନ୍ତୁ ତା ପୂର୍ବରୁ ଜନ୍ମ ହୋଇ କିଶୋର ବୟସରେ ପଦାର୍ପଣ କରୁଥିବା କୋମଳମତି ସନ୍ତାନ ସନ୍ତତିଙ୍କଠାରୁ ଟିକିଏ ଦୂରେଇ ଯାଆନ୍ତି । ଏହାଦ୍ୱାରା ବିକାଶଧାରା କିପରିଭାବେ ବ୍ୟାହତ ହୁଏ, ତାହା ସହଜରେ ଅନୁମେୟ ।

ବାସ୍ତବ ପରିପ୍ରେକ୍ଷୀରେ ଯୁବଶକ୍ତିକୁ ଯେଉଁସବୁ କାର୍ଯ୍ୟରେ ନିୟୋଜିତ କରାଯାଏ, ତାହା ବିକାଶ ଧାରାରେ ଉପେକ୍ଷା

କରାଯିବା ପ୍ରତି ଅଧିକ ସହାୟକ ହୋଇଥାଏ । ମୁଖ୍ୟତଃ ସେମାନଙ୍କୁ ଅଣ-କୁଶଳୀ କାର୍ଯ୍ୟରେ ନିୟୋଜିତ କରାଯିବା ସଙ୍ଗେ ସଙ୍ଗେ ଅତି ଅଳ୍ପ ପାରିଶ୍ରମିକ ଦିଆଯାଏ । ଏହାଦ୍ୱାରା ଯୁବଶକ୍ତିର କର୍ମ ବିମୁଖତା ପ୍ରକାଶପାଏ ଏବଂ ଯେଉଁ ଦୈହିକ କିମ୍ବା ମାନସିକ ପରିଶ୍ରମ ସେମାନେ କରନ୍ତି, ଆନ୍ତର୍ଜାତିକ ଶ୍ରମ ବଜାରରେ ତାହାର ପ୍ରକୃତ ମୂଲ୍ୟାୟନ ହୋଇ ପାରେନି । କର୍ମ କୁଶଳତା, କର୍ମାବେଗତା, କର୍ମ ତତ୍ପରତା ଓ ଉତ୍ସାହଭାବ ପରିବର୍ତ୍ତେ ଶ୍ରମ କାତରତା, ଶ୍ରମ ବିମୁଖତା ଓ ଆଳସ୍ୟ ପରାୟଣତା ବୃଦ୍ଧିପାଏ ।

ବିଦ୍ୟାଳୟ, ମହାବିଦ୍ୟାଳୟ କିମ୍ବା ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାଲାଭ କରୁଥିବା ଛାତ୍ରଛାତ୍ରୀଙ୍କ ବିଷୟ ସ୍ୱତନ୍ତ୍ର । ସେମାନେ ବାସ୍ତବତାଠାରୁ ବହୁ ଦୂରରେ । ସେମାନଙ୍କର ଅନ୍ତର୍ନିହିତ ଶ୍ରମ ଶକ୍ତିକୁ ଦେଶର ଆର୍ଥିକ ସମ୍ବଳ ରୂପେ ଗ୍ରହଣ କରାଯାଇ ନ ପାରେ । ତଥାପି ପରିସ୍ଥିତିର ତାଡ଼ନାରେ କେତେକ ଶିକ୍ଷାୟତନ ପରିତ୍ୟାଗ କରି ଅର୍ଥ ଉପାର୍ଜନ ପାଇଁ ବାହାରକୁ ଚାଲି ଯାଆନ୍ତି । ସେମାନଙ୍କ ଶ୍ରମ ଶକ୍ତିର ଗୁଣାତ୍ମକ ଅଭିବୃଦ୍ଧି ଘଟିପାରେ ନାହିଁ । ଏଣୁ, ଶିକ୍ଷାର ବିକାଶ ସହ ଉପଯୁକ୍ତ ତାଲିମର ବ୍ୟବସ୍ଥା ବିଶେଷ ଆବଶ୍ୟକ । ଏବେ ବିଦ୍ୟାଳୟ ସ୍ତରରୁ ଶିକ୍ଷାଦାନ ସହ କର୍ମ ବ୍ୟବସ୍ଥାକୁ ଜଡ଼ିତ କରାଇବା ପାଇଁ ଉଦ୍ୟମ ହେଉଛି । ଏହାଦ୍ୱାରା ଶ୍ରମ ବଜାରକୁ ଖାପ ଖୁଆଇଲା ଭଳି ଉପଯୁକ୍ତ ଶ୍ରମଶକ୍ତି ସମ୍ପନ୍ନ ଯୁବ ସମ୍ପ୍ରଦାୟକୁ ଗଢ଼ାଯାଇ ପାରିବ । ଶିକ୍ଷା ଓ ତାଲିମ ସାଙ୍ଗରେ ଯୁବକ ଓ ମହିଳାମାନେ ଯେପରି ପୁଷ୍ଟିକର ଖାଦ୍ୟ ଗ୍ରହଣକରି ସ୍ୱାସ୍ଥ୍ୟବାନ ହେବେ, ସେଥିପ୍ରତି ବିଶ୍ୱର ଦୃଷ୍ଟି ମଧ୍ୟ ଆକର୍ଷିତ ହୋଇଛି ।

ଯୁବ ସମାଜ ଦେଶର ବିପୁଳ ସମ୍ପଦ । ଅର୍ଥନୈତିକ ଦୃଷ୍ଟିକୋଣରୁ ସେମାନଙ୍କର ମୂଲ୍ୟ ଅମୂଲ୍ୟ । କିନ୍ତୁ ସେମାନେ ଯଦି ବେକାର କିମ୍ବା ଅର୍ଦ୍ଧବେକାରୀ ହୋଇ ବୁଲନ୍ତି ଅଥବା ଉପଯୁକ୍ତ ଶିକ୍ଷା ଓ ତାଲିମରୁ ବଞ୍ଚିତ ହୁଅନ୍ତି, ତେବେ ଏହାଦ୍ୱାରା ମାନବ ସମ୍ବଳର ବିପୁଳ କ୍ଷୟକ୍ଷତି ଘଟିବ । ତେଣୁ, ବିକାଶ ଧାରାରେ ନିରବଚ୍ଛିନ୍ନ, ଧାରାବାହିକ ତଥା ସଙ୍ଗଠିତ ଉଦ୍ୟମ କରାଗଲେ, ସେମାନେ ପ୍ରକୃତ ପକ୍ଷେ ଦୂରଦୃଷ୍ଟି ସମ୍ପନ୍ନ ଯୁବ-ଶକ୍ତିରେ ପରିଣତ ହେବା ସଙ୍ଗେସଙ୍ଗେ ଦେଶ ଓ ଜାତିର ସୁନାମ ବଜାୟ ରଖି ପାରିବେ ।

ବିକାଶୋନ୍ମୁଖୀ ରାଷ୍ଟ୍ରର ଜନସଂଖ୍ୟାର ଶତକଡ଼ା ୮୦ଭାଗ ହେଉଛନ୍ତି ମହିଳା ଓ ଶିଶୁ । ମହିଳାମାନଙ୍କ ଉପରେ ଶିଶୁମାନଙ୍କ ଭବିଷ୍ୟତ ନିର୍ଭର କରେ । ସେମାନେ ଶିଶୁମାନଙ୍କୁ ଯେପରି ଭାବଧାରା ନେଇ ଗଢ଼ିବେ, ଶିଶୁମାନେ ଠିକ୍ ସେପରି ଗଢ଼ିହେବେ । ମହିଳାମାନେ ଉପଯୁକ୍ତ ଶିକ୍ଷାଲାଭ କଲେ, ଛୋଟ ପରିବାର ଗଠନର ସ୍ୱପ୍ନ ସାର୍ଥକ ହୋଇପାରିବ । ସେମାନେ ସ୍ୱାସ୍ଥ୍ୟବତୀ ହେଲେ ସ୍ୱାସ୍ଥ୍ୟବାନ ସନ୍ତାନ ସନ୍ତତିଙ୍କୁ ଜନ୍ମ ଦେଇ ପାରିବେ । ସାଧାରଣତଃ ମହିଳା ଓ ଯୁବକମାନେ ବିକାଶଧାରାରେ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକ ପ୍ରାୟ ଏକା ପ୍ରକାରର । ଯୋଜନା ପ୍ରଣୟନକାରୀମାନେ ଏ ଦିଗଟି ପ୍ରତି ସଚେତନ ରହିବା ଆବଶ୍ୟକ । ଶିଶୁମାନେ ଦେଶର ଭବିଷ୍ୟତ । ଆଜିର ଶିଶୁ ଆଗାମୀ କାଲିର ଯୁବକ । କିନ୍ତୁ ଅନେକ କ୍ଷେତ୍ରରେ ଦେଖାଯାଉଛି ଯେ, ମା'ମାନେ କଳ କାରଖାନା, କ୍ଷେତବାଡ଼ି ବା ଅନ୍ୟାନ୍ୟ କାର୍ଯ୍ୟ କରିବାକୁ ଗଲା-ବେଳେ ପିଲାମାନଙ୍କୁ ସାଙ୍ଗରେ ନିଅନ୍ତି ଏବଂ ଆବଶ୍ୟକ ପଡ଼ିଲେ ସେମାନଙ୍କୁ କାର୍ଯ୍ୟରେ ମଧ୍ୟ ନିୟୋଜିତ କରିଥାଆନ୍ତି । ଏହା ଦେଶ ପକ୍ଷରେ କ୍ଷତିକାରକ । ସମ୍ପ୍ରତି ଦେଶର ଯୁବ ସମାଜର ଭବିଷ୍ୟତକୁ ଦୃଷ୍ଟିରେ ରଖି ଉନ୍ନୟନ ପରିକଳ୍ପନାମାନ ପ୍ରସ୍ତୁତ କରାଗଲାଣି । ଏହା ଫଳରେ ଭବିଷ୍ୟତରେ ସେମାନେ ସୁସ୍ଥ ପରିବାର ଗଠନ କରିବା ସଙ୍ଗେ ସଙ୍ଗେ ଶ୍ରମ ବଜାରରେ ସେମାନଙ୍କର ଶକ୍ତିକୁ ଅଧିକ ସୁଦୃଢ଼ କରିପାରିବେ ।

୧୯୮୫ ମସିହା ସାରା ତାରୁଣ୍ୟର ବର୍ଷ । ତାରୁଣ୍ୟର ପ୍ରତୀକ ଶ୍ରୀ ରାଜିବ ଗାନ୍ଧୀଙ୍କ ହସ୍ତରେ ଭାରତବର୍ଷ ତା'ର ଦାୟିତ୍ୱ ନ୍ୟସ୍ତକରି ଏ ସମ୍ବତ୍ସରର ସମ୍ମାନ ବୃଦ୍ଧି କରିଛି । ତାରୁଣ୍ୟର ଜୟଯାତ୍ରା ପୁଷ୍ପକଳ ଓ ପୁଷ୍ପିତ ହେବାର ଏହା ଶୁଭ ସୂଚନା । ଯୁବକ ଓ ମହିଳାମାନେ ଦେଶ ଓ ଜାତି ଗଠନ କାର୍ଯ୍ୟରେ ଯେପରି ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରିବେ, ସେଥିପ୍ରତି ପ୍ରଧାନମନ୍ତ୍ରୀ ବିଶେଷ ଗୁରୁତ୍ୱ ଦେଇଛନ୍ତି । ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଓଡ଼ିଶାର ଶିଳ୍ପ ବିପ୍ଳବରେ ଓ ଅନ୍ୟ ସମସ୍ତ ଗଠନମୂଳକ କାର୍ଯ୍ୟକ୍ରମରେ ଯୁବ ସମାଜ ଯେପରି ଅଧିକରୁ ଅଧିକ ସୁଯୋଗ ଲାଭ କରି-ପାରିବେ, ସେଥିପ୍ରତି ଆହ୍ୱାନ ଦେଇ ଆସୁଛନ୍ତି ।

ପ୍ରାୟ ଦଶବର୍ଷ ପୂର୍ବେ ଉଣେଇଶି ଶହ ପଞ୍ଚସ୍ତରୀ ମସିହାରେ ଆନ୍ତର୍ଜାତିକ ମହିଳା ସମ୍ବତ୍ସର ପାଳନ କରାଯାଇଥିଲା ଏବଂ ଏବର୍ଷ ଯୁବ ସମ୍ବତ୍ସର ପାଳନ କରାଯାଉଛି । ଏହି ସମ୍ବତ୍ସରର ସଫଳତା ଶାସନ ଓ ଜନସାଧାରଣଙ୍କ ସକ୍ରିୟ ସହଯୋଗରେ ସମ୍ଭବ । ଏ ଦିଗରେ କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରିବା ପୂର୍ବରୁ ଯୁବକ ଓ ମହିଳାମାନଙ୍କର ମତାମତ, ପାରିବାରିକ ସ୍ଥିତି, ଆୟପନ୍ଥା, ଶିକ୍ଷାଦୀକ୍ଷା ଓ ବୟସ ଇତ୍ୟାଦିକୁ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣରୁ ବିଚାର କରି ବ୍ୟାପକ ବିବରଣୀ ପ୍ରସ୍ତୁତ କରିବାକୁ ହେବ । ଏହାଦ୍ୱାରା ସେମାନେ କେବଳ ନିଜକୁ ସାଧାରଣ ଶ୍ରମିକ ଭାବେ ନିୟୋଜିତ ନ କରି ବୈଷୟିକ ଜ୍ଞାନ କୌଶଳ ହାସଲ କରିବା ପ୍ରତି ଲକ୍ଷ୍ୟ ଦେବେ ଓ ଦେଶ ତଥା ଜାତିର ଉନ୍ନତି କଳ୍ପେ ଉତ୍ସର୍ଗୀକୃତ ତଥା କର୍ମାଭିମୁଖୀ ମନୋଭାବ ପୋଷଣ କରିବେ ।

ଇ—ଏକୋଇଶି,
ୟୁନିଟ—ଆଠ,
ଭୁବନେଶ୍ୱର ।

# ଜଙ୍ଗଲ ସମ୍ପଦ ଓ ତାହାର ସୁରକ୍ଷା

ଶ୍ରୀ ଚନ୍ଦ୍ରୋଦୟ ଗୋବିନ୍ଦ ମହାପାତ୍ର

ଯୁଗ ଯୁଗଧରି ଜଙ୍ଗଲ ଆମ ଜାତୀୟ ଅର୍ଥନୀତିକୁ ବହୁଧା ପରିପୁଷ୍ଟ କରିଆସିଛି । କେଉଁ ଅନାଦିକାଳରୁ ବଣ, ଜଙ୍ଗଲ, ବୃକ୍ଷଲତା ଆଦି ମାନବସମାଜକୁ ନିଜର ସନ୍ତାନଭଳି ପାଳନ-କରିଆସିଛି । ଆମର ବେଦ, ସ୍ମୃତି ଓ ପୁରାଣମାନଙ୍କରେ ଏଗୁଡ଼ିକର ଜୀବନ୍ତ ଚିତ୍ରଣ କରାଯାଇଛି । ପୌରାଣିକ ଯୁଗରେ ଜଙ୍ଗଲଥିଲା—ବହୁ ମହାନ୍ ସାଧୁ ସନ୍ଥ ତଥା ଋଷିଙ୍କର ପବିତ୍ର ଆବାସସ୍ଥଳୀ ତଥା ତପସ୍ୟାଭୂମି । ଅବସର ବିନୋଦନ ତଥା ପାରିଧି ଉଦ୍ଦେଶ୍ୟରେ ସେତେବେଳେ ରାଜା ମହାରାଜାମାନେ ନିପଟ ତଥା ମନୋରମ ବନାନୀ ଅଭିମୁଖେ ଯାତ୍ରା କରୁଥିଲେ । ଆଜି ମଧ୍ୟ ସମସ୍ୟା ଜର୍ଜରିତ ମାନବ ତାର ମସ୍ତିଷ୍କର ଗୁରୁଭାର ଲାଘବକରିବାକୁ ଧାଇଁଯାଉଛି ଜଙ୍ଗଲଆଡ଼େ । ଜଙ୍ଗଲଜାତ ସମସ୍ତ ସଂପଦ ଲୁଣ୍ଠନକରି ମଧ୍ୟ ମନୁଷ୍ୟ ସେତିକିରେ ସନ୍ତୁଷ୍ଟ-ନୁହେଁ । ପ୍ରତିଟି ମୁହୂର୍ତ୍ତରେ ସେ ନିର୍ବିଘ୍ନରେ ସଫାକରି ଚାଲିଛି ଜଙ୍ଗଲସବୁ । ମନୁଷ୍ୟର ଆଜି ଏହି ଆତ୍ମଘାତୀ ଜଙ୍ଗଲକଟା ପ୍ରବୃତ୍ତି ପ୍ରକୃତିକୁ ଶ୍ରୀହୀନ କରିବା ସଂଗେ ସଂଗେ ମାନବ-ସମାଜର ଅସ୍ତିତ୍ୱକୁ ମଧ୍ୟ ଲୋପକରିଦେବାକୁ ବସିଛି । ବୈଜ୍ଞାନିକ ତଥା ଚିନ୍ତାଶୀଳ ବ୍ୟକ୍ତିଙ୍କ ବାରମ୍ବାର ତାଗିଦ ସତ୍ତ୍ୱେ ଉଦ୍‌ଭ୍ରାନ୍ତ ମନୁଷ୍ୟ ତାର ଦୁର୍ବାର ଲାଳସାରୁ ନିବୃତ୍ତହେବା ପରିବର୍ତ୍ତେ ତା'ର ତୀକ୍ଷ୍ଣ ପ୍ରଲୁବ୍‌ଧ କୁଠାରିକା ଗୋଟିକପରେ ଗୋଟିଏ ପାଦପକୁ ଭୂତଳଶାୟୀ କରିଚାଲିଛି । ଭାବିଲେ ଆଶ୍ଚର୍ଯ୍ୟ-ଲାଗେ—ଆଜିର ନିଷ୍ଠୁର ମାନବ ସମାଜ କେବଳ ବର୍ତ୍ତମାନର ଭିତ୍ତି ଉପରେ ବଞ୍ଚି ରହିବାକୁ ଆଗ୍ରହୀ । ସେ ତା'ର ଗୌରବମୟ ଅତୀତ ପରଂପରାପ୍ରତି ପରାଙ୍ମୁଖ । ଭବିଷ୍ୟତ ଦାୟାଦମାନଙ୍କ ପାଇଁ ତା'ର ହୃଦୟରେ ଟିକିଏ ହେଲେ ବି ଦରଦ ନାହିଁ ।

ଜଙ୍ଗଲ ଧ୍ୱଂସହେତୁ କ୍ରମଶଃ ପୃଥିବୀର ପରିବେଶ ଦୂଷିତ ହେଉଛି ଓ ମାନବସମାଜ ବହୁ କଷ୍ଟସାଧ୍ୟ ରୋଗର ଶିକାର ହେଉଛି । ଜଙ୍ଗଲଧ୍ୱଂସର ପରିଣତିରେ ମନୁଷ୍ୟ ଓ ପ୍ରାଣୀମାନଙ୍କ ଜୀବନିକା ସଦୃଶ ଅମ୍ଳଜାନର ଘୋର ଅଭାବ ଘଟିବ । ଏକ ହିସାବରୁ ଜଣାଯାଇଛି ଯେ ବିଶ୍ୱରେ ଶିଳ୍ପବିପ୍ଳବର ଅଭ୍ୟୁଦୟ ସମୟରେ ବାୟୁମଣ୍ଡଳରେ ୨୯୫ ନିୟୁତାଂଶ ଅଙ୍ଗାରକାମ୍ଳ ଥିବାସ୍ଥଳେ ତାହା ଆଜି ବୃଦ୍ଧି ପାଇ ୩୨୫ ନିୟୁତାଂଶରେ ପହଞ୍ଚିଲାଣି । ଏହାବ୍ୟତୀତ କଳକାରଖାନା ଗାଡ଼ି ମଟର ଇତ୍ୟାଦି ବ୍ୟବହାର ଯୋଗୁଁ ବାର୍ଷିକ ପ୍ରାୟ ୧୫୦୦ଟନ୍ ଅଙ୍ଗାରକାମ୍ଳ ବାୟୁମଣ୍ଡଳକୁ ଆମେ ଛାଡ଼ୁଛେ । ଲୋକସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇବା ସଂଗେ ସଂଗେ ଆମେ ପ୍ରାଣୀଜଗତର ଜୀବନ-ରକ୍ଷାକାରୀ ଜଙ୍ଗଲସବୁ ସଫା କରି ଚାଲିଛୁ । ତେଣୁ ପ୍ରାଣୀ ଓ ଉଦ୍ଭିଦମାନଙ୍କମଧ୍ୟରେ ଥିବା ଯୁଗଯୁଗଧରି ଅଙ୍ଗାରକାମ୍ଳ ଓ ଅମ୍ଳଜାନ ମଧ୍ୟରେ ଯେଉଁ ଭାରସାମ୍ୟ ରହିଆସିଥିଲା—ତାହା ଆଜି ଧୂଳିସାତ୍ ହେବାକୁ ବସିଛି । ଦିନଥିଲା—ଭାରତର ହିମାଳୟ ପାଦଦେଶରେ ଅବସ୍ଥିତ ମସୌରୀ ଓ ଡେରାଡୁନ ପ୍ରଭୃତି ସ୍ଥାନ ଘଞ୍ଚବନାନୀରେ ପରିପୂର୍ଣ୍ଣଥିଲା । ମାତ୍ର ମନମୁଖୀ ତଥା ଅପରିଣାମଦର୍ଶୀ ଜଙ୍ଗଲ କଟା ଫଳରେ ସେଠାରେ ଆଜି ଜଳବାୟୁରେ ପରିବର୍ତ୍ତନ ଘଟୁଛି । ଦକ୍ଷିଣରେ ଏକଦା ନିବିଡ ତଥା ବୃହଦ୍‌କାୟ ବୃକ୍ଷରାଜି ପରିବେଷ୍ଟିତ ନିଲଗିରି ପର୍ବତ ବର୍ତ୍ତମାନ ଏକରକମ ବୃକ୍ଷଶୂନ୍ୟ ଅବସ୍ଥାକୁ ଆସିଯାଇଛି । ଜଙ୍ଗଲଧ୍ୱଂସ ଯୋଗୁ ପରିବେଶ ପ୍ରଦୂଷଣ, ମୃତ୍ତିକାକ୍ଷୟ ତଥା ବନ୍ୟା ପ୍ରଭୃତିକୁ ସ୍ୱାଗତ କରିବା ସଂଗେ ସଂଗେ ଯୁଗଯୁଗଧରି ବସବାସକରି ରହି ଆସିଥିବା ଅଧିବାସୀଙ୍କୁ ସେମାନଙ୍କ ନ୍ୟାଯ୍ୟ ଦାବୀରୁ ବଂଚିତ କରାଯାଉଛି । ୟୁରୋପଭଳି ମହାଦେଶମାନଙ୍କରେ ଶିଳ୍ପର ବ୍ୟାପକ ପ୍ରସାର ସତ୍ତ୍ୱେ ସେସବୁଦେଶରେ ଜଙ୍ଗଲ ରହିଛି । ଆଶ୍ଚର୍ଯ୍ୟରକଥା—ଜଙ୍ଗଲର ସୁରକ୍ଷା ଉପରେ ଏତେ ଗୁରୁତ୍ୱ ଦିଆଯାଏ ଯେ ସେଠାରେ ବଡ଼ ବଡ଼ ସହରର ମଧ୍ୟସ୍ଥଳୀରେ ମଧ୍ୟ ଜଙ୍ଗଲ ରଖାଯାଇଛି । ପୃଥିବୀର ସବୁଠାରୁ ବର୍ଷାବହୁଳ ଚେରାପୁଞ୍ଜି ରେ ମଧ୍ୟ ଜଙ୍ଗଲ ଧ୍ୱଂସ ହେବାରେ ଲାଗିଛି । ଭାରତବର୍ଷର ସମୁଦାୟ ଅଂଚଳର ଶତକଡ଼ା ୨୩ଭାଗ ସ୍ଥାନରେ ଜଙ୍ଗଲବିଭାଗର କର୍ତ୍ତୃତ୍ୱଥିବାସ୍ଥଳେ ମାତ୍ର ଶତକଡ଼ା ୧୦ରୁ ୧୨ଭାଗ ଅଂଚଳରେ ଜଙ୍ଗଲ ରହିଛି । ଏକହିସାବରୁ ଜଣାଯାଇଛି ଯେ ଆମଦେଶରେ ପ୍ରତିବର୍ଷ ପ୍ରାୟ ଏକ ନିୟୁତରୁ ଊର୍ଦ୍ଧ୍ୱ ହେକ୍ଟର ପରିମିତ ଜଙ୍ଗଲ ଧ୍ୱଂସ ହେଉଛି ଓ ପ୍ରାୟ ୧୫ହଜାର ହେକ୍ଟର ପରିମିତ ଜଙ୍ଗଲ ବିଭିନ୍ନ ପ୍ରକଳ୍ପର କାର୍ଯ୍ୟକାରିତାରେ ନଷ୍ଟ ହେଉଛି । ଗତ ୨୫ବର୍ଷ ଧରି ହିମାଚଳ ପ୍ରଦେଶରେ ପ୍ରତିବର୍ଷ ରାଜ୍ୟର ମୋଟ ଅଞ୍ଚଳର ଶତକଡ଼ା ୧ ଭାଗ ଜଙ୍ଗଲ ଧ୍ୱଂସ କରାଯାଉଛି । ଉକ୍ତ ସମୀକ୍ଷାରୁ ଆହୁରିମଧ୍ୟ ସୂଚୀତ ଯେ ୧୯୯୦ ମସିହା ସୁଦ୍ଧା ହିମାଚଳ ପ୍ରଦେଶରେ ଫଳସ୍ୱରୂପାର୍ଥେ ପ୍ରତିବର୍ଷ ପ୍ରାୟ ଦେଢ଼ଲକ୍ଷ ଗଛକଟାଯିବାପାଇଁ ପ୍ରସ୍ତାବ ରହିଛି । ୧୯୮୨ରେ ଓଡ଼ିଶାରେ ଥିବା ୬୬ଲକ୍ଷ୪୦ ହଜାର ହେକ୍ଟର ପରିମିତ ଜଙ୍ଗଲ ମଧ୍ୟ ଦିନକୁଦିନ ହ୍ରାସ-ପାଇବା ଉଦ୍‌ବେଗର କାରଣ ହୋଇଛି ।

ଦିଗରେ ହେଲେ ମଧ୍ୟ ସୌଭାଗ୍ୟବଶତଃ ଜଙ୍ଗଲର ଐତିହ୍ୟ ଓ ଜାତୀୟ ଅର୍ଥନୀତିରେ ଏହାର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ବର୍ତ୍ତମାନ ଉଭୟ ସରକାର ତଥା ଜନସାଧାରଣ ସଚେତନ । ଉନ୍ନତ ପ୍ରଣାଳୀରେ ଜଙ୍ଗଲ ସୃଷ୍ଟି, ପାରମ୍ପାରିକ ଜଙ୍ଗଲର ସୁରକ୍ଷା, କ୍ଷୟପ୍ରାପ୍ତ ଜଙ୍ଗଲର ପୁନର୍ବିନ୍ୟାସ, ସହରାଞ୍ଚଳରେ ଜଙ୍ଗଲସୃଷ୍ଟି ଓ ସର୍ବୋପରି ସାମାଜିକ ଜଙ୍ଗଲସୃଷ୍ଟି ଉପରେ ବର୍ତ୍ତମାନ ଅଧିକ ଗୁରୁତ୍ୱ ଆରୋପ କରାଯାଉଛି । ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମ ଜରିଆରେ ଜଙ୍ଗଲସୃଷ୍ଟି ପାଇଁ ଉଦ୍ୟମ ଅବ୍ୟାହତ ରହିଛି । ଜଙ୍ଗଲବୃଦ୍ଧି ତଥା ତାର ରକ୍ଷଣାବେକ୍ଷଣ ସମ୍ପର୍କରେ କର୍ମଚାରୀମାନଙ୍କୁ ଉପଯୁକ୍ତ ବୈଷୟିକ ଶିକ୍ଷା ତଥା ତାଲିମ ଦେବାପାଇଁ ବହୁ ପ୍ରତିଷ୍ଠାନ ଗଢିଉଠୁଛି । ଜଙ୍ଗଲସୁରକ୍ଷା କେବଳ ସରକାରୀ ଦାୟିତ୍ୱ ହେବା ଉଚିତ ନୁହେଁ । ଜନସାଧାରଣ ମଧ୍ୟ ଏହି କାର୍ଯ୍ୟକ୍ରମସହ ସାମିଲ ହେବା ଆବଶ୍ୟକ । ଜନସାଧାରଣ ନିତ୍ୟ ବ୍ୟବହାର୍ଯ୍ୟ ଜାଳେଣି କାଠ ଆବଶ୍ୟକତା ମେଣ୍ଟାଇବା ସଙ୍ଗେ ସଙ୍ଗେ ସ୍ଥାନୀୟ ଅଧିବାସୀଙ୍କୁ ନିଯୁକ୍ତି ଯୋଗାଇ ପାରିଲେ ଜଙ୍ଗଲ ସୁରକ୍ଷା ପଥ ସୁଗମ ହୋଇପାରିବ । ସାମାଜିକ ଜଙ୍ଗଲ ସୃଷ୍ଟି କ୍ଷେତ୍ରରେ ସରକାରଙ୍କ ସମେତ ଜନସାଧାରଣଙ୍କ ଗୁରୁଦାୟିତ୍ୱ ରହିଛି । ମାତ୍ର ସାମାଜିକ ଜଙ୍ଗଲସୃଷ୍ଟି ନାମରେ ମୂଲ୍ୟବାନ୍ ତଥା ପୁରାତନ ଜଙ୍ଗଲକୁ ଧ୍ୱଂସ କରାଯିବା ଉଚିତ୍ ନୁହେଁ । ପୁରାତନ ଜଙ୍ଗଲରେ ଯେଉଁଠି ଶୂନ୍ୟସ୍ଥାନ ଅଛି—ସେଠାରେ ଆମେ ନୂତନ ପ୍ରକାର ବୃକ୍ଷ ରୋପଣକରି ତାହା ପୂରଣ କରିପାରିବା । କୃଷି ଓ ଶିଳ୍ପର ଅଗ୍ରଗତି ତଥା ଦ୍ରୁତ ଜନସଂଖ୍ୟା ବୃଦ୍ଧିହେତୁ ଭାରତରେ ସୁରକ୍ଷିତ ଜଙ୍ଗଲ ପରିମାଣ କ୍ରମଶଃ ହ୍ରାସ ପାଉଛି । ସୀମିତ ଜମି ଉପରେ ସର୍ବବିଧ ଉପାୟରେ ବୈଜ୍ଞାନିକ ପଦ୍ଧତିରେ ବୃକ୍ଷସୃଷ୍ଟି, ରୋପଣ ତଥା ବଂଶବୃଦ୍ଧି କରି ଜଙ୍ଗଲ ସୃଷ୍ଟି କରିବାକୁ ହେବ ।

ସମ୍ବିଧାନରେ ଜଙ୍ଗଲ ଓ ତା'ର ରକ୍ଷଣାବେକ୍ଷଣ ରାଜ୍ୟ-ତାଲିକା ଅନ୍ତର୍ଭୁକ୍ତ । କେତେକ ରାଜ୍ୟସରକାରଙ୍କ କୋହଳ ଜଙ୍ଗଲ ନୀତି ଫଳରେ ଚିପ୍‌କୋ ଆନ୍ଦୋଳନ (Hug the trees movement) ଭଳି ଆନ୍ଦୋଳନ ମୁଣ୍ଡଟେକି ଉଠୁଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଭାରତର ଉତ୍ତରପ୍ରଦେଶରୁ ସୃଷ୍ଟି ହୋଇଥିବା ଏହି ଆନ୍ଦୋଳନ ସମଗ୍ର ବିଶ୍ୱରେ ଏକ ଅଭିନବ ଘଟଣା ଓ ଏହାପ୍ରତି ଦିନକୁଦିନ ପ୍ରବଳ ଜନସମର୍ଥନ ମିଳୁଛି । ମୁଖ୍ୟତଃ ଏହା ଉତ୍ତର ପ୍ରଦେଶର ଜଂଗଲନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ମଧ୍ୟ କ୍ରମଶଃ ଏହି ଆନ୍ଦୋଳନ ଅନ୍ୟ ରାଜ୍ୟମାନଙ୍କୁ ପ୍ରସାରିତ ହେଉଛି । ସେଦିନଥିଲା ୧୯୭୩ ମାର୍ଚ୍ଚ ମାସର ଏକ ସକାଳ । ହଠାତ୍ ଉତ୍ତରପ୍ରଦେଶର ଚମୋଲୀ ଜିଲ୍ଲା ଅନ୍ତର୍ଗତ ଗୋପେଶ୍ୱରଠାରେ ଦଳେ କ୍ରୀଡ଼ାସାମଗ୍ରୀ ପ୍ରସ୍ତୁତକାରୀ ବ୍ୟବସାୟୀ ୧୦ଟି ଆସବୃକ୍ଷ କାଟିବାପାଇଁ ଆବଶ୍ୟକୀୟ ଲାଇସେନ୍‌ସଧରି ଉପସ୍ଥିତହେଲେ । ସେମାନେ ଆସିଥିଲେ ଆହ୍ଲାଦିତରେ । ମାତ୍ର ସ୍ଥାନୀୟ ଅଧିବାସୀ ସେମାନଙ୍କୁ ଏହି କାର୍ଯ୍ୟରୁ ନିବୃତ୍ତ ହେବାକୁ ନିବେଦନକଲେ । ଅନୁରୋଧକୁ ପ୍ରତ୍ୟାଖ୍ୟାନକରି ବ୍ୟବସାୟୀମାନେ ଯେତେବେଳେ ଗଛକାଟିବାକୁ ଆଗେଇଲେ—ସେତେବେଳେ ସ୍ଥାନୀୟଲୋକେ ନିର୍ଦ୍ଦିଷ୍ଟ ବୃକ୍ଷଗୁଡ଼ିକୁ ଜାବୁଡ଼ି ଧରିଲେ । ଫଳତଃ ବ୍ୟବସାୟୀମାନେ ସେଦିନ ଶୂନ୍ୟହସ୍ତରେ ଆହ୍ଲାଦ ଫେରିଗଲେ । ତା'ର କିଛି ସପ୍ତାହ ପରେ ହଠାତ୍ ସେହି କାଠକଟାଳୀମାନେ ଆବିର୍ଭାବହେଲେ ଗୋପେଶ୍ୱରଠାରୁ ୮୦ କି. ମି. ଦୂରସ୍ଥ ରାମପୁରଠାରେ । ସେଠାରେ ମଧ୍ୟ ଚିପ୍‌କୋ ଆନ୍ଦୋଳନ ସେମାନଙ୍କ କାର୍ଯ୍ୟ ହାସଲରେ ପ୍ରତିବନ୍ଧକ-ଭାବେ ଠିଆହେଲା । ଏହି ଆନ୍ଦୋଳନର ଚରମ ତଥା ନାଟକୀୟ ପର୍ଯ୍ୟାୟ ପରିଲକ୍ଷିତ ହେଲା ୧୯୭୪ରେ ଯୋଶିମଠଠାରୁ ୬୫ କି.ମି. ଦୂରସ୍ଥ ରେଣିଠାରେ । ସେଦିନ ରେଣିର ପୁରୁଷ ଅଧିବାସୀମାନେ ଯୋଶି ମଠଠାରେ ଏକ ଜଙ୍ଗଲ ନିଲାମର ପ୍ରତିବାଦ କରିବାକୁ ଯାଇଥିଲେ । ଠିକ୍ ସେହି ସମୟ ଭଣ୍ଡି ଦଳେ ଠିକାଦାର ଲାଇସେନ୍‌ସଧରି ଗଛକାଟିବାକୁ ପହଞ୍ଚିଲେ ରେଣିଠାରେ । ମାତ୍ର ଗ୍ରାମର ମହିଳାମାନେ ଏଥିରେ ଦବି ନଯାଇ ୫୦ବର୍ଷ ବୟସ୍କା ଶ୍ରୀମତୀ ଗୌର ଦେବୀ ନାମକ ଜଣେ ମହିଳାଙ୍କ ନେତୃତ୍ୱରେ ସେମାନଙ୍କ ପଥରୋଧ କଲେ । ସେମାନେ ଗାଇଲେ ଗୀତ—"ଜଙ୍ଗଲ ହେଉଛି ଆମ ମା'ର ଘର । ଜୀବନଦେଇ ଆମେ ସୁରକ୍ଷା କରିବୁ ତାର" । ଆଜି ଏହି ଚିପ୍‌କୋ ଆନ୍ଦୋଳନ କ୍ରମଶଃ ଲୋକପ୍ରିୟ ହୋଇଉଠୁଛି । ବର୍ତ୍ତମାନ ଓ ଭବିଷ୍ୟତପାଇଁ ଆମକୁ ଯେ କୌଣସିମତେ ଜଙ୍ଗଲର ସୁରକ୍ଷା କରିବାକୁ ପଡ଼ିବ ।



"ଅର୍ଥନୀତିରେ ଇଲେକ୍ଟ୍ରୋନିକ୍ସ ର ଭୂମିକା"– ଆଲୋଚନାରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଓ ଶ୍ରୀ ଷଡ଼ଙ୍ଗୀ ।

ସେତୁ ୩ଟି ହେଲା:—ଚିତ୍ରକା ଅମର୍ଦା-ରାଜଘାଟ ରାସ୍ତାରେ କାଳିଆପାଠ ସେତୁ, ବାରିପଦା-ବାଙ୍ଗ୍ରା ରାସ୍ତାରେ ମହାବିନାୟକ ସେତୁ ଏବଂ ଚିତ୍ରୋତ୍ପଳା-ରାଜଘାଟ ରାସ୍ତାରେ ମୁର୍ତ୍ତି ସେତୁ ।

## କ୍ରୀଡ଼ା ସଙ୍ଘଗୁଡ଼ିକୁ ସାହାଯ୍ୟ

ରାଜ୍ୟରେ କ୍ରୀଡ଼ାର ମାନବୃଦ୍ଧି କରିବା ଏବଂ ରାଜ୍ୟ ଓ ଜାତୀୟ ସ୍ତରରେ ଅନୁଷ୍ଠିତ ବିଭିନ୍ନ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବା ଲାଗି କ୍ରୀଡ଼ାପ୍ରେମୀମାନଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ସରକାର ବିଭିନ୍ନ କ୍ରୀଡ଼ା ସଂଘମାନଙ୍କୁ ଆର୍ଥିକ ସହାୟତା କରୁଛନ୍ତି । ଗତ ଆର୍ଥିକ ବର୍ଷରେ ଏ ବାବଦରେ ସମୁଦାୟ ୪ ଲକ୍ଷ ୬୪ ହଜାର ୫୦୦ ଟଙ୍କା ମଞ୍ଜୁର କରାଯାଇଛି । ତନ୍ମଧ୍ୟରୁ ରାଜ୍ୟ ସ୍ତରୀୟ ୧୫ଟି କ୍ରୀଡ଼ା ସଂଘ ଓ ଜିଲ୍ଲା ସ୍ତରୀୟ ୧୧ଟି କ୍ରୀଡ଼ାସଂଘ ପାଇଁ ମଞ୍ଜୁର କରାଯାଇଥିବା ୨ ଲକ୍ଷ ୮୫ ହଜାର ଟଙ୍କା ଅନ୍ତର୍ଭୁକ୍ତ । ଏହି ଅର୍ଥ ବିନିଯୋଗରେ ସଂପୃକ୍ତ ସଂଘସବୁ ରାଜ୍ୟ ଓ ଜାତୀୟ ସ୍ତରରେ ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତା ଆୟୋଜନ କରି କ୍ରୀଡ଼ାପ୍ରେମୀମାନେ ଯେପରି ସେଗୁଡ଼ିକରେ ଯୋଗ ଦେଇ ପାରିବେ, ସେ ଦିଗରେ ବ୍ୟବସ୍ଥା କରିବେ । ସେହିପରି ଜାତୀୟ 'ଚାମ୍ପିୟନ୍‌ସିପ୍' ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବାକୁ ଇଚ୍ଛୁକ ଥିବା କ୍ରୀଡ଼ାପ୍ରେମୀମାନଙ୍କୁ ଉପଯୁକ୍ତ ଶିକ୍ଷାଦେବା ବାବଦରେ ମଧ୍ୟ ୧୪ଟି ରାଜ୍ୟସ୍ତରୀୟ ସଂଘକୁ ୧ ଲକ୍ଷ ୧ ହଜାର ଟଙ୍କା ମଞ୍ଜୁର କରାଯାଇଛି । ଏହା ବ୍ୟତୀତ ୧୬ଟି ରାଜ୍ୟ ସ୍ତରୀୟ ଏବଂ ୧୧ଟି ଜିଲ୍ଲାସ୍ତରୀୟ କ୍ରୀଡ଼ା ସଂଘକୁ ସେମାନଙ୍କର ରକ୍ଷଣାବେକ୍ଷଣ ଖର୍ଚ୍ଚ ବାବଦରେ ୭୮,୫୦୦ ଟଙ୍କା ସାହାଯ୍ୟ ମଞ୍ଜୁର କରାଯାଇଛି ।

## ଗୋତି ଶ୍ରମିକ ଥଇଥାନ

ରାଜ୍ୟରେ ୧୯୮୧-୮୨ ଠାରୁ ଗତ ଆର୍ଥିକ ବର୍ଷର ଫେବୃଆରୀ ଶେଷ ସୁଦ୍ଧା ମୋଟ ୨୩,୬୯୯ ଜଣ ଗୋତି ଶ୍ରମିକଙ୍କୁ ଥଇଥାନ କରାଯାଇଛି । ସେମାନଙ୍କ ମଧ୍ୟରେ ୭,୧୨୪ ଜଣ ତଫସିଲଭୁକ୍ତ ଜାତି ଓ ୭,୪୦୯ ଜଣ ତଫସିଲଭୁକ୍ତ ସଂପ୍ରଦାୟ ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ମୋଟ ୪୦,୨୫୩ ଜଣ ଗୋତି ଶ୍ରମିକଙ୍କୁ ଚିହ୍ନଟ କରାଯାଇଥିଲା । ଏ ମଧ୍ୟରେ ୧୧,୪୩୬ ଜଣ ତଫସିଲଭୁକ୍ତ ଜାତି ଓ ୧୪,୬୬୦ ଜଣ ତଫସିଲଭୁକ୍ତ ସଂପ୍ରଦାୟ ଅନ୍ତର୍ଭୁକ୍ତ । ଚିହ୍ନଟ କରାଯାଇଥିବା ଗୋତି ଶ୍ରମିକଙ୍କ ମଧ୍ୟରୁ ଗତ ଫେବୃଆରୀ ଶେଷ ସୁଦ୍ଧା ୩୫,୮୫୦ ଜଣଙ୍କୁ ମୁକ୍ତ କରାଯାଇଛି । ଗୋତିମୁକ୍ତ ଶ୍ରମିକଙ୍କ ମଧ୍ୟରୁ ୧୦,୪୦୬ ଜଣ ତଫସିଲଭୁକ୍ତ ଜାତି ଓ ୧୨,୮୫୭ ଜଣ ତଫସିଲଭୁକ୍ତ ସଂପ୍ରଦାୟ ଲୋକଙ୍କୁ ଗୋତିମୁକ୍ତ କରାଯାଇଛି ।

## ଶିକ୍ଷାକ୍ଷେତ୍ରରେ ମହିଳାମାନଙ୍କର ଉଲ୍ଲେଖନୀୟ ନାମଲେଖା ପାଇଁ ଓଡ଼ିଶା ସରକାର କେନ୍ଦ୍ର ସରକାରଙ୍କଠାରୁ ପୁରସ୍କାର ପାଇଲେ

ରାଜ୍ୟ ଶିକ୍ଷା ବିଭାଗ ପ୍ରଥମ ଥର ପାଇଁ ନାରୀଶିକ୍ଷା କ୍ଷେତ୍ରରେ ଉଲ୍ଲେଖନୀୟ ନାମଲେଖା ସକାଶେ କେନ୍ଦ୍ର ସରକାରଙ୍କଠାରୁ ୨୫ ଲକ୍ଷ ଟଙ୍କା ଲେଖାଏଁ ୨ଟି ଜାତୀୟ ସ୍ତରର ପ୍ରୋତ୍ସାହନ ପୁରସ୍କାର ପାଇଛନ୍ତି । ଏହି ୨ଟି ଜାତୀୟସ୍ତରର ପୁରସ୍କାର ହେଲା ପ୍ରୌଢ଼ ଶିକ୍ଷାକେନ୍ଦ୍ରମାନଙ୍କରେ ମହିଳା ଶିକ୍ଷାର୍ଥିନୀଙ୍କ ବହୁଳ ନାମ ଲେଖା ଏବଂ ଅନ୍ୟଟି ସାର୍ବଜନୀନ ପ୍ରାଥମିକ ଶିକ୍ଷା (ଅଣ-ଆନୁଷ୍ଠାନିକ) କ୍ଷେତ୍ରରେ ଛାତ୍ରୀମାନଙ୍କର ବହୁଳ ସଂଖ୍ୟାରେ ମଧ୍ୟ ନାମଲେଖା କ୍ଷେତ୍ରରେ ଅଗ୍ରଗତି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଗତ ଦୁଇବର୍ଷ ହେଲା କେନ୍ଦ୍ର ସରକାର ଜାତୀୟ ସ୍ତରରେ ମହିଳା ନାମଲେଖା ପାଇଁ ୩ଟି ପୁରସ୍କାର ପ୍ରବର୍ତ୍ତନ କରିଛନ୍ତି । ସେଗୁଡ଼ିକ ହେଲା, ପ୍ରାଥମିକ ଶିକ୍ଷା (ଆନୁଷ୍ଠାନିକ), ପ୍ରାଥମିକ ଶିକ୍ଷା (ଅଣ-ଆନୁଷ୍ଠାନିକ) ଏବଂ ପ୍ରୌଢ଼ଶିକ୍ଷା କ୍ଷେତ୍ରରେ ବାଳିକା ଓ ନାରୀମାନଙ୍କର ନାମଲେଖାରେ ଅଗ୍ରଗତି ପାଇଁ । ଏହି ପୁରସ୍କାର ମଧ୍ୟରୁ ଓଡ଼ିଶା ଏ ବର୍ଷ ୨ ଗୋଟି ପୁରସ୍କାର ପାଇବାର ସୁଯୋଗ ଲାଭ କରିଛି ।

ଏହା ବ୍ୟତୀତ ରାଜ୍ୟ ଶିକ୍ଷା ବିଭାଗ ମହିଳା ନାମଲେଖା କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ପାଇଁ ପାଇଥିବା ଅନ୍ୟ ପୁରସ୍କାରଗୁଡ଼ିକ ହେଲା:—ରାଜ୍ୟର ୬୫ଟି ପ୍ରୌଢ଼ଶିକ୍ଷା କେନ୍ଦ୍ରକୁ ୫ ହଜାର ଟଙ୍କା ଲେଖାଏଁ ଏପରି ୩ ଲକ୍ଷ ୨୫ ହଜାର ଟଙ୍କା, ଜିଲ୍ଲାସ୍ତରରେ ଗୋଟିଏ ପ୍ରୌଢ଼ଶିକ୍ଷା କ୍ଷେତ୍ରରେ ଅଗ୍ରଗତି ପାଇଁ ୩ ଲକ୍ଷ ଟଙ୍କା, ଆନୁଷ୍ଠାନିକ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ପଞ୍ଚାୟତ ସ୍ତରରେ ୧୩ଟି ପୁରସ୍କାର ପ୍ରତ୍ୟେକ ୨୫ ହଜାର ଟଙ୍କା ଲେଖାଏଁ ମୋଟ ୩ ଲକ୍ଷ ୨୫ ହଜାର ଟଙ୍କା ଏବଂ ବ୍ଲକ୍ ସ୍ତରରେ ୯ଟି ସାଧାରଣ ବ୍ଲକ୍ ଓ ୯ ଟି ଆଦିବାସୀ ବ୍ଲକ୍ ପାଇଁ ପ୍ରତ୍ୟେକ ବ୍ଲକ୍‌କୁ ୫୦ ହଜାର ଟଙ୍କା ଲେଖାଏଁ ମୋଟ ୯ ଲକ୍ଷ ଟଙ୍କା ଏବଂ ଜିଲ୍ଲା ସ୍ତରରେ ଗୋଟିଏ ଜିଲ୍ଲା ପାଇଁ ୩ ଲକ୍ଷ ଟଙ୍କା; ଏପରି ସର୍ବମୋଟ ପୁରସ୍କାର ପରିମାଣ ହେଉଛି ୭୧ ଲକ୍ଷ ୫୦ ହଜାର ଟଙ୍କା । ଏହି ଅର୍ଥ ସେସବୁ ଅଞ୍ଚଳରେ ଶିକ୍ଷାର ଉନ୍ନତି ପାଇଁ ଖର୍ଚ୍ଚ କରାଯିବ । ଏହି ପୁରସ୍କାର ଘୋଷଣା କରି ଓଡ଼ିଶା ସରକାରଙ୍କୁ କେନ୍ଦ୍ର ସରକାର ସାଧୁବାଦ ଜଣାଇଛନ୍ତି ।

## ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ପ୍ରାୟ ୧ ଲକ୍ଷ ଲୋକ ଉପକୃତ

ଗତ ଆର୍ଥିକ ବର୍ଷର ଅପ୍ରେଲ ପହିଲଠାରୁ ଡିସେମ୍ବର ଶେଷ ସୁଦ୍ଧା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ଦ୍ୱାରା ରାଜ୍ୟର ମୋଟ ୯୯,୯୭୪ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ୨୦,୬୦୮ ଜଣ ତଫସିଲଭୁକ୍ତ ଜାତି ଓ ୨୫,୦୩୭ ଜଣ ତଫସିଲଭୁକ୍ତ ସଂପ୍ରଦାୟ ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ଉକ୍ତ ଯୋଜନାରେ ମୋଟ୍ ୧୩ କୋଟି ୩୦ ଲକ୍ଷ ୪୯ ହଜାର ଟଙ୍କା ଖର୍ଚ୍ଚ ହୋଇଛି । ଏଥିମଧ୍ୟରୁ ୧୦ କୋଟି ୧୮ ଲକ୍ଷ ୧୦ ହଜାର ଟଙ୍କା ସବ୍‌ସିଡି ଓ ୩ କୋଟି ୧୨ ଲକ୍ଷ ୩୯ ହଜାର ଟଙ୍କା ଆନୁଷଙ୍ଗିକ ବାବଦରୁ ଖର୍ଚ୍ଚ ହୋଇଛି । ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସଂପ୍ରଦାୟ ଲୋକଙ୍କ ପାଇଁ ଯଥାକ୍ରମେ ୧ କୋଟି ୮୬ ଲକ୍ଷ ୯୯ ହଜାର ଟଙ୍କା ଏବଂ ୨ କୋଟି ୮୯ ଲକ୍ଷ ଟଙ୍କା ସବ୍‌ସିଡି ଆକାରରେ ଦିଆଯାଇଛି ।

## ଗୋ ବନ୍ଧ୍ୟା ନିରାକରଣ ଓ ଗୋ ଚିକିତ୍ସା ଶିବିର

ସଂପ୍ରତି ସାଲେପୁରଠାରେ ଉତ୍କଳ ଗୋ ମଙ୍ଗଳ ସମିତି ଆନୁକୂଲ୍ୟରେ ଗୋଟିଏ ଗୋ ବନ୍ଧ୍ୟା ନିରାକରଣ ଓ ଗୋ ଚିକିତ୍ସା ଶିବିର ଅନୁଷ୍ଠିତ ହୋଇଥିଲା । ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ଛାନ୍ ଗୁପ୍ତ ଏହି ଶିବିର ପରିଦର୍ଶନ କରି ଦରିଦ୍ର ଲୋକଙ୍କ ଉଥାନ ଯୋଜନାରେ ପ୍ରଥମ ହୋଇଥିବା ଗାଈର ମାଲିକ୍ ମହାଜନପୁର ଗ୍ରାମର ଶ୍ରୀ ଭୋଳାନାଥ ନାଥଙ୍କୁ ମାନପତ୍ର ସହ ୩୦୦ ଟଙ୍କା ପୁରସ୍କାର ପ୍ରଦାନ କରିଥିଲେ ।

ରାଜ୍ୟ ପଶୁ ଚିକିତ୍ସା ଓ ପଶୁ ପାଳନ ବିଭାଗର ବିଶେଷଜ୍ଞ ଏବଂ ଭୁବନେଶ୍ୱର ପଶୁ ଚିକିତ୍ସା ମହାବିଦ୍ୟାଳୟର ଅଧ୍ୟାପକ ଓ ସ୍ନାତକୋତ୍ତର ଛାତ୍ରମାନେ ଏହି ଶିବିର ଚିକିତ୍ସା ଦାୟିତ୍ୱରେ ରହିଥିଲେ । ଏଠାରେ ୪୪୦ଟି ଗୋରୁଗାଈଙ୍କର ବିଭିନ୍ନ ପ୍ରକାର ଚିକିତ୍ସା କରାଯାଇଥିଲା । ତନ୍ମଧ୍ୟରୁ ୬୪ଟିର ଶଲ୍ୟ ଚିକିତ୍ସା, ୨୨୪ଟିର କୃତ୍ରିମ ପ୍ରଜନନ, ସ୍ତ୍ରୀ ଓ ବନ୍ଧ୍ୟାରୋଗ ଚିକିତ୍ସା ଏବଂ ୧୫୨ଟିର ଭେଷଜ ଚିକିତ୍ସା ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ୬୨ଟି ଗୋରୁଗାଈଙ୍କର ମଳମୂତ୍ର ଓ ରକ୍ତ ପ୍ରଭୃତି ପରୀକ୍ଷା କରାଯାଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗୋଟିଏ ଗାଈର ଗଣ୍ଡି ପଡ଼ିଯାଇଥିବା ଅନ୍ତକୁ ଅସ୍ତ୍ରୋପଚାର କରି ଶଲ୍ୟ ଚିକିତ୍ସା ଅଧ୍ୟାପକ ଅତି ଚମତ୍କାର ଭାବେ ତାକୁ ଯୋଡ଼ିଥିଲେ ।

---

## ସମୁଦ୍ରରେ ମାଛଧରା ନୌକା ପାଇଁ ଲାଇସେନ୍ସ ପ୍ରଚଳନ

ଓଡ଼ିଶା ସମୁଦ୍ର ଜଳରେ ଯାନ୍ତ୍ରିକ ମାଛଧରା ପୋତର କ୍ରମାଗତ ସଂଖ୍ୟାବୃଦ୍ଧି ଓ ଅବାଧ ମାଛଧରା ଫଳରେ ସମୁଦ୍ରକୂଳ ଅଞ୍ଚଳରେ ସାଧାରଣ ନୌକାରେ ମାଛ ଧରି ଜୀବିକା ନିର୍ବାହ କରୁଥିବା ଅସଂଖ୍ୟ ମତ୍ସ୍ୟଜୀବୀଙ୍କ ସ୍ୱାର୍ଥ ବ୍ୟାହତ ହେଉଛି । ଏହାର ସମାଧାନ ଲାଗି ସମୁଦ୍ରରେ ମାଛଧରା ନିମନ୍ତେ ଯାତାୟାତ କରୁଥିବା ପୋତଗୁଡ଼ିକର ନିୟନ୍ତ୍ରଣ ପାଇଁ ଓଡ଼ିଶା ସାମୁଦ୍ରିକ ମାଛଧରା ଆଇନ ଜରିଆରେ ମାଛଧରା ନୌକା ଲାଇସେନ୍ସ ପ୍ରଥା ସୃଷ୍ଟି କରାଯାଇଛି । ଏହି ଆଇନ ୧୯୮୨ ମସିହାରେ ସରକାରୀ ସ୍ୱୀକୃତି ଲାଭ କରି ୧୯୮୪ ଫେବ୍ରୁଆରୀଠାରୁ କାର୍ଯ୍ୟକାରୀ ହୋଇଛି । ଏହି ଆଇନରେ ଉଲ୍ଲେଖ ଅଛି ଯେ ଆଇନ ପ୍ରଣୟନ ହେବା ଦିନଠାରୁ କୌଣସି ବ୍ୟକ୍ତି ମନଇଚ୍ଛା କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଲାଇସେନ୍ସ ନ ହୋଇଥିବା କୌଣସି ମାଛଧରା ପୋତରେ ମାଛ ଧରି ପାରିବେ ନାହିଁ ।

ଏହି ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଭାରପ୍ରାପ୍ତ ଅଧିକାରୀ ଭାବେ ବାଲେଶ୍ୱର ଜିଲ୍ଲା ନିମନ୍ତେ ବାଲେଶ୍ୱରସ୍ଥିତ ସହକାରୀ ମତ୍ସ୍ୟ ନିର୍ଦ୍ଦେଶକ (ସାମୁଦ୍ରିକ), କଟକ ଓ ପୁରୀ (ଚିଲିକା ଅଞ୍ଚଳ ବ୍ୟତୀତ) ଜିଲ୍ଲା ନିମନ୍ତେ ଜୁଜଙ୍ଗସ୍ଥିତ ସହକାରୀ ମତ୍ସ୍ୟ ନିର୍ଦ୍ଦେଶକ (ସାମୁଦ୍ରିକ), ଗଞ୍ଜାମ ଜିଲ୍ଲା ନମନ୍ତେ ଗଞ୍ଜାମସ୍ଥିତ ସହକାରୀ ମତ୍ସ୍ୟ ନିର୍ଦ୍ଦେଶକ (ସାମୁଦ୍ରିକ) ଏବଂ ସମଗ୍ର ଚିଲିକା ଅଞ୍ଚଳ ନିମନ୍ତେ ବାଲୁଗାଁସ୍ଥିତ ସହକାରୀ ମତ୍ସ୍ୟ ନିର୍ଦ୍ଦେଶକ (ବି.ଏଣ୍ଡ୍.ଟି.ଙ୍କୁ) ଦାୟିତ୍ୱ ଅର୍ପିତ କରାଯାଇଛି । ଆଇନ ଅନୁସାରେ ଅଭିଯୋଗକୁ ଆଣି ଭାରପ୍ରାପ୍ତ ଅଧିକାରୀ ଭାବେ ବାଲେଶ୍ୱର ଜିଲ୍ଲା ପାଇଁ ବାଲେଶ୍ୱରସ୍ଥିତ ଉପ ମତ୍ସ୍ୟ ନିର୍ଦ୍ଦେଶକ, ସାମୁଦ୍ରିକ (ଉତ୍ତର) ଏବଂ କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲା ପାଇଁ କଟକସ୍ଥିତ ଉପ ମତ୍ସ୍ୟ ନିର୍ଦ୍ଦେଶକ, ସାମୁଦ୍ରିକ (ଦକ୍ଷିଣ)ଙ୍କୁ ମୁତୟନ କରାଯାଇଛି ।

ଅଣ-ଯାନ୍ତ୍ରିକ ମାଛଧରା ନୌକା ସମୁଦ୍ର କୂଳଠାରୁ ୫ କିଲୋମିଟର ପର୍ଯ୍ୟନ୍ତ ଅବାଧରେ ମାଛଧରା କାର୍ଯ୍ୟ କରିପାରିବେ ଏବଂ ଏହି ନିର୍ଦ୍ଦିଷ୍ଟ ଅଞ୍ଚଳ ମଧ୍ୟରେ କୌଣସି ଯାନ୍ତ୍ରିକ ନୌକା ମାଛଧରା କାର୍ଯ୍ୟ କରିପାରିବେ ନାହିଁ । ୮.୫ ମିଟର ଦୈର୍ଘ୍ୟଠାରୁ କ୍ଷୁଦ୍ର ଅଣ-ଯାନ୍ତ୍ରିକ ନୌକା ପାଇଁ ରେଜିଷ୍ଟ୍ରେସନ୍ ମାହାସୁଲ ୧୦ ଟଙ୍କା ଓ ଲାଇସେନ୍ସ ମାହାସୁଲ ବାର୍ଷିକ ୨୦ ଟଙ୍କା ଏବଂ ୮.୫ ମିଟର ଦୈର୍ଘ୍ୟଠାରୁ ବୃହତ୍ ଅଣ-ଯାନ୍ତ୍ରିକ ନୌକା ପାଇଁ ରେଜିଷ୍ଟ୍ରେସନ୍ ମାହାସୁଲ ୨୦ ଟଙ୍କା ଓ ଲାଇସେନ୍ସ୍ ମାହାସୁଲ ବାର୍ଷିକ ୫୦ ଟଙ୍କା ଧାର୍ଯ୍ୟ ହୋଇଛି । ୧୫ ମିଟର ଦୈର୍ଘ୍ୟ ବିଶିଷ୍ଟ ମାଛଧରା ଯାନ୍ତ୍ରିକ ପୋତ ୫ କିଲୋମିଟର ବାହାରେ ମାଛଧରା କାର୍ଯ୍ୟ କରିପାରିବ । ୧୫ ମିଟର ଦୈର୍ଘ୍ୟ ପର୍ଯ୍ୟନ୍ତ ଯାନ୍ତ୍ରିକ ପୋତ ପାଇଁ ରେଜିଷ୍ଟ୍ରେସନ୍ ମାହାସୁଲ ୫୦ ଟଙ୍କା ଓ ଲାଇସେନ୍ସ୍ ମାହାସୁଲ ବାର୍ଷିକ ୧୦୦ ଟଙ୍କା ଧାର୍ଯ୍ୟ ହୋଇଛି । ୨୫ ଗ୍ରସ୍‌ଟନ ଓ ୧୫ ମିଟରରୁ ଊର୍ଦ୍ଧ୍ୱ ଦୈର୍ଘ୍ୟ ବିଶିଷ୍ଟ ମାଛଧରା ପୋତ ସମୁଦ୍ର କୂଳଠାରୁ ୧୦ କିଲୋମିଟର ବାହାରେ କେବଳ ମାଛଧରା କାର୍ଯ୍ୟ କରିପାରିବ । ଏହିଭଳି ବୃହତ୍ ଯାନ୍ତ୍ରିକ ପୋତ ପାଇଁ ରେଜିଷ୍ଟ୍ରେସନ ମାହାସୁଲ ୧୦୦ ଟଙ୍କା ଓ ଲାଇସେନସ ମାହାସୁଲ ବାର୍ଷିକ ୩୦୦ ଟଙ୍କା ଧାର୍ଯ୍ୟ ହୋଇଛି । ଯାତାୟାତ ନ କରୁଥିବା ମାଛଧରା ପୋତ ସମୁଦ୍ର କୂଳଠାରୁ ୨୪ ନଟିକାଲ ମାଇଲ ପର୍ଯ୍ୟନ୍ତ ମାଛଧରା କାର୍ଯ୍ୟ କରିପାରିବ ।

ଏ ସଂପର୍କୀୟ ଆପତ୍ତି ଅଭିଯୋଗ ଆଦିର ବିଚାର ପାଇଁ କଟକରେ ଜିଲ୍ଲା ଜଜ୍‌ଙ୍କ ଅଧ୍ୟକ୍ଷତାରେ ଏକ ବିଚାର ପରିଷଦ ମଧ୍ୟ ଗଠିତ ହୋଇଛି ।

---

## ଜାତୀୟ ରାଜପଥ ସଂସ୍ଥା ଦ୍ୱାରା ସେତୁ

ଗତ ୫ବର୍ଷ ମଧ୍ୟରେ ଜାତୀୟ ରାଜପଥ ଓ ପ୍ରକଳ୍ପ ସଂସ୍ଥାର ଉଦ୍ୟମରେ ରାଜ୍ୟର ୧୧ଟି ଜିଲ୍ଲାରେ ପ୍ରବାହିତ ବିଭିନ୍ନ ନଦୀ ଓ ନାଳ ଉପରେ ସମୁଦାୟ ୪୦ଟି ସେତୁ ନିର୍ମିତ ହୋଇଛି । ସେଗୁଡ଼ିକ ମଧ୍ୟରେ ଆଦିବାସୀ ଅଞ୍ଚଳମାନଙ୍କରେ ନିର୍ମିତ ୧୭ଟି ସେତୁ ଅନ୍ତର୍ଭୁକ୍ତ ।

ଏହି ୪୦ଟି ସେତୁ ମଧ୍ୟରୁ ଢେଙ୍କାନାଳ ଜିଲ୍ଲାର ଘଇମୁଣ୍ଡା ନାଳ ସେତୁଟି ସର୍ବାଧିକ ୨୮ ଲକ୍ଷ ୬୦ ହଜାର ଟଙ୍କା ଏବଂ ବାଲେଶ୍ୱର ଜିଲ୍ଲାର ମନ୍ଦାରୀ-ବାଲିଚନ୍ଦ୍ରଘାଟ ରାସ୍ତାରେ ଘମେଇ ସେତୁଟି ୨୬ ଲକ୍ଷ ୬୮ ହଜାର ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହୋଇଛି । ଢେଙ୍କାନାଳ ଜିଲ୍ଲାରେ ୧୪ ଲକ୍ଷ ୫୦ ହଜାର ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ଦ୍ୱିତୀୟ ସେତୁଟି ହେଲା, ସିଗଡ଼ା ନାଳ ସେତୁ । ସେହିପରି କଟକ ଜିଲ୍ଲାରେ ୬ଟି, କଳାହାଣ୍ଡି ଜିଲ୍ଲାରେ ୧ଟି, ଫୁଲବାଣୀ ଜିଲ୍ଲାରେ ୪ଟି ଏବଂ ପୁରୀ ଜିଲ୍ଲାରେ ୩ଟି ସେତୁ ନିର୍ମିତ ହୋଇଛି ।

ଆଦିବାସୀ ଅଞ୍ଚଳମାନଙ୍କରେ ନିର୍ମିତ ୧୭ଟି ସେତୁ ହେଲା :— କେନ୍ଦୁଝର ଜିଲ୍ଲାର ମେରମେଡ଼ା ନାଳ ସେତୁ ଓ ବଡ଼ କାଳିଞ୍ଜର

ସେତୁ, କୋରାପୁଟ ଜିଲ୍ଲାର ବେଢ଼ୋଇବୋଡ଼ି ନାଳ ସେତୁ, ଗଣିତାଳ ନାଳ ସେତୁ, ଗାଗାଇପାଳ-ପୁଷଲୀ ରାସ୍ତାରେ ନିର୍ମିତ ସେତୁ, କଣାପଡ଼ା ନାଳ ସେତୁ ଏବଂ ଜରଣ ନାଳ ସେତୁ । ମୟୂରଭଞ୍ଜ ଜିଲ୍ଲାରେ ନିର୍ମିତ ୪ଟି ସେତୁ ହେଲା :— କଣ୍ଡାଖଇରୀ ସେତୁ, ହରିପୁର ନାଳ ସେତୁ, ବାଦଗିଆ ନାଳ ସେତୁ ଓ ବଉଲ ନାଳ ସେତୁ । ସୁନ୍ଦରଗଡ଼ ଜିଲ୍ଲାର ଆଦିବାସୀ ବହୁଳ ଅଞ୍ଚଳମାନଙ୍କରେ ନିର୍ମିତ ୫ଟି ସେତୁ ହେଲା :— ଗାଡ଼ିଆଜୋର, ବରଗୁଡ଼ା ନାଳ, ଉଷାଲୀ ନାଳ, ଗୁହୁଡ଼ା ନାଳ ଏବଂ ସରସ୍ୱତୀ ସେତୁ । ସମ୍ବଲପୁର ଜିଲ୍ଲାରେ ଜାତୀୟ ରାଜପଥ ସଂସ୍ଥାଦ୍ୱାରା ନିର୍ମିତ ସମୁଦାୟ ସାତଟି ସେତୁ ମଧ୍ୟରୁ ଯମନକିରା ରାସ୍ତାରେ ନିର୍ମିତ ଆସୁଡ଼ା ନାଳ ସେତୁ ଦ୍ୱାରା ସ୍ଥାନୀୟ ଆଦିବାସୀମାନେ ବିଶେଷ ଉପକୃତ ହେଉଛନ୍ତି ।

---

## ୧୭୦୪ ଜଣ ମହିଳା ଉପକୃତ

ଗତ ଆର୍ଥିକ ବର୍ଷର ଏପ୍ରେଲ ପହିଲଠାରୁ ଡିସେମ୍ବର ଶେଷ ସୁଦ୍ଧା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ଦ୍ୱାରା ରାଜ୍ୟରେ ଉପକୃତ ହୋଇଥିବା ମୋଟ ୯୯,୯୭୪ ଜଣଙ୍କ ମଧ୍ୟରେ ୧୭୦୪ ଜଣ ହେଉଛନ୍ତି ମହିଳା । ସେମାନଙ୍କ ମଧ୍ୟରେ ବାଲେଶ୍ୱର ଜିଲ୍ଲାର ୧୦୫ ଜଣ, ବଲାଙ୍ଗୀର ଜିଲ୍ଲାର ୨୫୧ ଜଣ, କଟକ ଜିଲ୍ଲାର ୧୫୩ ଜଣ, ଢେଙ୍କାନାଳ ଜିଲ୍ଲାର ୭୪ ଜଣ, ଗଞ୍ଜାମ ଜିଲ୍ଲାର ୧୩୪ ଜଣ, କଳାହାଣ୍ଡି ଜିଲ୍ଲାର ୫୮ ଜଣ, କୋରାପୁଟ ଜିଲ୍ଲାର ୪୧୪ ଜଣ, ମୟୂରଭଞ୍ଜ ଜିଲ୍ଲାର ୧୮୪ ଜଣ, ପୁରୀ ଜିଲ୍ଲାର ୨୨୬ ଜଣ ଏବଂ ସମ୍ବଲପୁର ଜିଲ୍ଲାର ୫୦ଜଣ ଅନ୍ତର୍ଭୁକ୍ତ ।

---

## ଦୁର୍ଘଟଣାରେ ମୃତ ବ୍ୟକ୍ତିଙ୍କ ଆତ୍ମୀୟଙ୍କୁ ଆର୍ଥିକ ସାହାଯ୍ୟ

କେନ୍ଦ୍ର ସରକାର ମଟରଗାଡ଼ି ଆଇନର ସଂଶୋଧନ କରି ‘ସୋଲସିଅମ୍’ ଫଣ୍ଡ’ ନାମକ ଏକ ପାଣ୍ଠି ଗଠନ କରିଛନ୍ତି । ଯେଉଁ କ୍ଷେତ୍ରରେ ଦୁର୍ଘଟଣା ଘଟାଇ ଥିବା ମଟରଗାଡ଼ିର ସନ୍ଧାନ ମିଳୁ ନ ଥିବ, ସେହି କ୍ଷେତ୍ରରେ ଦୁର୍ଘଟଣାରେ ମୃତ ବ୍ୟକ୍ତିମାନଙ୍କର ଆତ୍ମୀୟଙ୍କୁ ପାଞ୍ଚହଜାର ଟଙ୍କା ଏହି ପାଣ୍ଠିରୁ ମଞ୍ଜୁର କରାଯାଇ ପାରିବ । ସେହିପରି ଦୁର୍ଘଟଣାରେ ଗୁରୁତର ଆହତ ବ୍ୟକ୍ତିଙ୍କୁ ଏକ ହଜାର ଟଙ୍କା ମଞ୍ଜୁର କରାଯାଇ ପାରିବ ।

ଏହି ପାଣ୍ଠିରୁ ସାହାଯ୍ୟ ପାଇବା ନିମନ୍ତେ ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତି କିମ୍ବା ଆତ୍ମୀୟ ଦୁର୍ଘଟଣା ଘଟିବାର ଏକମାସ ମଧ୍ୟରେ ଦୁର୍ଘଟଣା ଘଟିଥିବା ଇଲାକାର ତହସିଲଦାର କିମ୍ବା ସବ୍-ଡିଭିଜନାଲ ଅଫିସରଙ୍କୁ ଆବେଦନ କରିପାରିବେ । ଏଥି ନିମନ୍ତେ ଆବଶ୍ୟକୀୟ ଫର୍ମ ଉକ୍ତ ଅଫିସମାନଙ୍କଠାରୁ ମିଳିପାରିବ । ଜନସାଧାରଣ ଏହାର ସୁଯୋଗ ନେବାପାଇଁ ରାଜ୍ୟ ପରିବହନ କମିଶନରଙ୍କ ଦପ୍ତରରୁ ଜଣାଇ ଦିଆଯାଇଅଛି ।

## ଅତ୍ୟାଧୁନିକ ଇଟିଟ୍ରନ ଡିଜିଟାଲ୍ ଘଡ଼ି

୧୯୮୩ ମସିହା ସେପ୍ଟେମ୍ବର ମାସଠାରୁ ଭୁବନେଶ୍ୱର ସନ୍ନିକଟବର୍ତ୍ତୀ ଚନ୍ଦକା ଶିଳ୍ପାଞ୍ଚଳରେ ୭୩ ଲକ୍ଷ ୩୦ ହଜାର ଟଙ୍କା ବିନିଯୋଗରେ ପ୍ରତିଷ୍ଠିତ ଇଟିଟ୍ରନ ଘଡ଼ି କାରଖାନାରୁ ଅତି ଉନ୍ନତ କିସମର ହାତବନ୍ଧା ଘଡ଼ି, କାନ୍ଥଘଣ୍ଟା ଏବଂ ବିଭିନ୍ନ ଧରଣର ଗଣନାକାରୀ ଯନ୍ତ୍ର (କାଲ୍‌କୁଲେଟର) ଉତ୍ପାଦିତ ହେଲଣି । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏହି କାରଖାନାର ଶୁଭ ଉଦ୍‌ଘାଟନ କରିଥିଲେ । ଏଠାରୁ ବାର୍ଷିକ ୨୧ ଲକ୍ଷ ଘଡ଼ି ନିର୍ମାଣ ପାଇଁ ଲକ୍ଷ୍ୟ ରଖାଯାଇଛି । ଇପିକଲ ଓ ନେଲକୋ ପକ୍ଷରୁ ଏଥିପାଇଁ ପ୍ରୋତ୍ସାହନ ଯୋଗାଇ ଦିଆଯାଇଛି । ଡିଜିଟାଲ ଘଡ଼ି ପ୍ରସ୍ତୁତ କରିବାରେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ହିଟାଚି କମ୍ପାନୀର ଜ୍ଞାନ କୌଶଳ ସମେତ ବ୍ୟାଟେରୀ ଓ ଅନ୍ୟାନ୍ୟ କେତେକ ଯନ୍ତ୍ରାଂଶ ବ୍ୟବହାର କରି ଏହି ଘଡ଼ି ନିର୍ମାଣ କରାଯାଉଥିବାରୁ ଏହା ଉତ୍କୃଷ୍ଟ ଭାବରେ ଆଦୃତ ହୋଇପାରିଛି । ଘଡ଼ିରେ ବର୍ଷ, ମାସ ଓ ତାରିଖ ସାଙ୍ଗକୁ କେତେକ ବିଶେଷ ଧରଣର ଘଡ଼ିରେ ଆଲୋକ ବ୍ୟବସ୍ଥା ଓ ଆଲାରାମ ବ୍ୟବସ୍ଥା ମଧ୍ୟ ରହିଛି । ଏଠାରେ ୯୩ ଜଣଙ୍କ ପାଇଁ ବିଶେଷକରି ମହିଳା କର୍ମଚାରୀଙ୍କ ପାଇଁ ଚାକିରି ସୁଯୋଗ ସୃଷ୍ଟି କରାଯାଇଛି । ଏଠାରେ କାର୍ଯ୍ୟ କରୁଥିବା ମହିଳା କର୍ମଚାରୀମାନଙ୍କୁ ନିଯୁକ୍ତି ପୂର୍ବରୁ ଉପଯୁକ୍ତ ତାଲିମ ଦିଆଯାଇଥାଏ । ତେଣୁ, ଘଡ଼ି ତିଆରିବେଳେ ଉଚ୍ଚମାନ ରକ୍ଷାକରି ଘଡ଼ି ନିର୍ମାଣ ସହଜ ହୋଇଥାଏ । ମହିଳା କର୍ମଚାରୀମାନଙ୍କ ସୁରକ୍ଷା ଏବଂ କଲ୍ୟାଣ ପାଇଁ ଅନୁଷ୍ଠାନ ପକ୍ଷରୁ ବ୍ୟବସ୍ଥା କରାଯାଇଛି । ଏହି କାରଖାନା ପାଇଁ ଅଧ ମେଗାୱାଟ ମାତ୍ର ବିଦ୍ୟୁତଶକ୍ତି ଆବଶ୍ୟକ ହୁଏ ।

---

## ଗ୍ରାମାଞ୍ଚଳ ରାସ୍ତାର ଉନ୍ନତି

ବିଗତ ଷଷ୍ଠପଞ୍ଚବାର୍ଷିକ ଯୋଜନାର ପ୍ରଥମ ୪ବର୍ଷ ମଧ୍ୟରେ ଜାତୀୟ ରାଜପଥ ଓ ପ୍ରକଳ୍ପ ସଂସ୍ଥାର ଉଦ୍ୟମରେ ରାଜ୍ୟର ଗ୍ରାମାଞ୍ଚଳରେ ସମୁଦାୟ ୨,୪୨୨ କି. ମି. ରାସ୍ତା ଏବଂ କେତେକ କ୍ଷୁଦ୍ରଧରଣ ସେତୁର ଉନ୍ନତି କରାଯାଇଛି । ଏ ବାବଦରେ ୨୧ କୋଟି ୪୮ ଲକ୍ଷ ୪୭ ହଜାର ଟଙ୍କା ବିନିଯୋଗ କରାଯାଇଛି । ଏହା ବ୍ୟତୀତ ଯୋଜନାର ଶେଷ ବର୍ଷ (୧୯୮୪-୮୫)ରେ ୬ କୋଟି ଟଙ୍କା ବିନିଯୋଗରେ ପ୍ରାୟ ୨୦୦ କି. ମି. ଗ୍ରାମାଞ୍ଚଳ ରାସ୍ତାର ଉନ୍ନତି କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ଏବଂ ଏ ଦିଗରେ ଉଲ୍ଲେଖନୀୟ ଅଗ୍ରଗତି ହାସଲ ହୋଇଛି ।

ପୂର୍ବରୁ ରହିଆସିଥିବା ୨୧୯ଟି ଅସଂପୂର୍ଣ୍ଣ ଏମ୍. ଏନ୍. ପି. ରାସ୍ତା ଏବଂ କେତେକ ଛୋଟଧରଣର ସେତୁ ସମେତ ୯୦ଟି ଗ୍ରାମ୍ୟରାସ୍ତାର ଉନ୍ନତି କରିବା ଲାଗି ସେହି ଯୋଜନା କାଳ ମଧ୍ୟରେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ଏଠାରେ ଉଲ୍ଲେଖନୀୟ ଯେ ଷଷ୍ଠ ଯୋଜନାର ମାତ୍ର ପ୍ରଥମ ୩ ବର୍ଷ ମଧ୍ୟରେ ସେହି ୨୧୯ଟି ଏମ୍. ଏନ୍. ପି. ରାସ୍ତାର ଉନ୍ନୟନ କାର୍ଯ୍ୟ ସଂପୂର୍ଣ୍ଣ କରାଯିବା ସଙ୍ଗେ ସଙ୍ଗେ ୨୧ଟି ଗ୍ରାମ୍ୟରାସ୍ତାର ଉନ୍ନତିବିଧାନ କରାଯାଇ ପାରିଛି । ସେହିପରି ଯୋଜନାର ଚତୁର୍ଥ ବର୍ଷ (୧୯୮୩-୮୪)ରେ

ଗ୍ରାମାଞ୍ଚଳର ୪ଟି ମୁଖ୍ୟ ରାସ୍ତା ଏବଂ ୨୫ଟି ଗ୍ରାମ୍ୟରାସ୍ତାର ଉନ୍ନତି କରାଯାଇଥିଲା । ସେହିସବୁ ରାସ୍ତାର ସମୁଦାୟ ଦୈର୍ଘ୍ୟ ହେଉଛି ୨,୪୨୨ କି. ମି. ।

ଏହାଫଳରେ ରାଜ୍ୟର ୧,୫୦୦ରୁ ଉର୍ଦ୍ଧ୍ୱ ଲୋକସଂଖ୍ୟା ବିଶିଷ୍ଟ ପ୍ରାୟ ୯୫୦ଟି ବଡ଼ଗ୍ରାମ ଏବଂ ୧,୦୦୦ରୁ ୧,୫୦୦ ଲୋକସଂଖ୍ୟା ବିଶିଷ୍ଟ ୧୮୦ଟି ଗାମକୁ ବର୍ଷସାରା ଯାତାୟତ କରିବାର ସୁବିଧା ହୋଇପାରିଛି ।

## ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା

ମାଛଚାଷ କରାଯାଉଥିବା ଗାଡ଼ିଆ ପୋଖରୀର ଜଳକୁ କାର୍ଯ୍ୟକ୍ଷମ କରିବା, ଧୀବରମାନଙ୍କୁ ତାଲିମ ଦେବା ଓ ପୋଖରୀଗୁଡ଼ିକର ସଂସ୍କାର କରିବା ତଥା ଆନୁଷଙ୍ଗିକ ଯନ୍ତ୍ରପାତି କ୍ରୟ କରିବା ଉଦ୍ଦେଶ୍ୟରେ ବିଶ୍ୱ ବ୍ୟାଙ୍କ୍ ସହାୟତାରେ ରାଜ୍ୟର କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ମୟୂରଭଞ୍ଜ, ଫୁଲବାଣୀ, ବଲାଙ୍ଗୀର ଓ ଢେଙ୍କାନାଳ ଜିଲ୍ଲାଗୁଡ଼ିକରେ ୧୧ଟି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା କାର୍ଯ୍ୟ କରୁଛି । ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲାକୁ ଏହାର ପରିସରଭୁକ୍ତ କରାଯିବା ପାଇଁ ସ୍ଥିର କରାଯାଇଛି ।

ଉକ୍ତ ସଂସ୍ଥା ଦ୍ୱାରା ୧୯୮୪-୮୫ ଆର୍ଥିକ ବର୍ଷର ଗତ ଡିସେମ୍ବର ଶେଷ ସୁଦ୍ଧା ମୋଟ୍ ୨,୪୮୯ ହେକ୍ଟର ପରିମିତ ଜଳାଶୟର ଉନ୍ନତି ବିଧାନ କରାଯିବା ସଙ୍ଗେ ସଙ୍ଗେ ୬୮୭ ଜଣ ମତ୍ସ୍ୟଚାଷୀଙ୍କୁ ଆଭ୍ୟନ୍ତରୀଣ ମାଛଚାଷ ସଂପର୍କରେ ଆବଶ୍ୟକୀୟ ତାଲିମ ପ୍ରଦାନ କରାଯାଇଛି ।

ଏଥିପାଇଁ ବିଭିନ୍ନ ଋଣ ପ୍ରସ୍ତାବମାନ ବିଚାର କରାଯାଇ ସଂପୃକ୍ତ ବ୍ୟାଙ୍କ୍‌ମାନେ ଉକ୍ତ ସମୟ ମଧ୍ୟରେ ମତ୍ସ୍ୟଚାଷୀମାନଙ୍କୁ ୧ କୋଟି ୭୨ ଲକ୍ଷ ୮୬ ହଜାର ଟଙ୍କା ଋଣ ମଞ୍ଜୁର କରିଛନ୍ତି । ମତ୍ସ୍ୟଚାଷୀ ସଂସ୍ଥା ମଧ୍ୟ ମତ୍ସ୍ୟଚାଷୀମାନଙ୍କୁ ୮ ଲକ୍ଷ ୨୨ ହଜାର ଟଙ୍କା ସବ୍‌ସିଡ୍ ଆକାରରେ ଅଗ୍ରୀମ ଦେଇଛନ୍ତି ।

ଚଳିତ ବର୍ଷ ଏହାକୁ ଆହୁରି ବ୍ୟାପକ କରି ଅଧିକ ୨୬୦୦ ହେକ୍ଟର ପରିମିତ ଜଳାଶୟର ଉନ୍ନତି ବିଧାନ କରାଯିବା ସଙ୍ଗେ ସଙ୍ଗେ ୨,୯୨୦ ଜଣ ମତ୍ସ୍ୟଚାଷୀଙ୍କୁ ତାଲିମ ଦେବାର ପ୍ରସ୍ତାବ କରାଯାଇଛି ।

## ଆକ୍ଟିଭେଟେଡ୍ କାଲ୍‌ସିୟମ୍ କାର୍ବୋନେଟ୍ ଉତ୍ପାଦନ

ଭୁବନେଶ୍ୱର ନିକଟସ୍ଥ ଚାନ୍ଦକା ଶିଳ୍ପାଂଚଳରେ କଳିଙ୍ଗ କାର୍ବୋନେଟ୍ କାରଖାନାରୁ ଆକ୍‌ଟିଭେଟେଡ୍ କାଲ୍‌ସିୟମ ଉତ୍ପାଦନ ଆରମ୍ଭ ହୋଇଛି । ଏହି ଶିଳ୍ପ ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ୫ ଏକର ଜମି ଯୋଗାଇ ଦେଇଛନ୍ତି । କାରଖାନା ନିର୍ମାଣ ଓ ଯନ୍ତ୍ରପାତି ବାବଦରେ ଏହି କାରଖାନାରେ ୧କୋଟି ୩୨ଲକ୍ଷ ଟଙ୍କା ବ୍ୟୟ ହୋଇଛି । ଗତବର୍ଷ ଜୁଲାଇ ମାସରୁ ଏହି କାରଖାନାରୁ ଉତ୍ପାଦନ ଆରମ୍ଭ କରାଯାଇ କାଲ୍‌ସିୟମ୍ କାର୍ବୋନେଟ ରାଜ୍ୟ ମଧ୍ୟରେ ଓ ରାଜ୍ୟ ବାହାରକୁ ପଠାଯାଉଛି । ବାଲେଶ୍ୱର ଓଡ଼ିଶା ପ୍ଲାଷ୍ଟିକ୍ ଓ ଜୟଶଓ୍ୱାଲ ପ୍ଲାଷ୍ଟିକ୍, କଟକର ଦୁର୍ଗା ପ୍ଲାଷ୍ଟିକ୍, ମଂଚେଶ୍ୱରସ୍ଥ ମିଂଟୋପାଇପ ଓ କୋଣାର୍କ ପାଇପ୍ ଏହି କାରଖାନାରୁ କାଲସିୟମ୍ କାର୍ବୋନେଟ୍ ଖରିଦ୍ କରୁଛନ୍ତି । କାରଖାନାରୁ ପ୍ରସ୍ତୁତ କାଲସିୟମ୍ କାର୍ବୋନେଟ୍ ପି. ଭି. ସି. ପାଇପ୍, କ୍ୟାବଲ୍, ଟାୟାର ଓ ଟ୍ୟୁବ୍, ପ୍ରସାଧାନ ସାମଗ୍ରୀ ଓ ରବର ପ୍ରସ୍ତୁତ କରିବାରେ ବ୍ୟବହାର କରାଯାଇଥାଏ । କାରଖାନାପାଇଁ କଂଚାମାଲ ଚୂନପଥର ମୁଖ୍ୟ ଓ ଏହା ଡେରାଡୁନ୍‌ରୁ ଆମଦାନୀ କରାଯାଉଛି । କାଲସିୟମ୍ କାର୍ବୋନେଟ୍ ପାଇଁ ଶତକଡ଼ା ୯୮.୫ଭାଗ ଖାଂଟି ଚୂନପଥର ଆବଶ୍ୟକ । ଚୂନପଥର ବ୍ୟତୀତ ଏଥିପାଇଁ ଶତକଡ଼ା ଏକଭାଗ ମାଗ୍ନେସିୟମ, ଆଇରନ୍, ଓ ସିଲିକା ବ୍ୟବହାର କରାଯାଇଥାଏ. ପ୍ରତିମାସରେ ଉତ୍ପାଦନ-ପାଇଁ ମାସକୁ ୪୦୦ଟନ୍ ଚୂନପଥର ଆବଶ୍ୟକ ପଡୁଛି । ପ୍ରତିଦିନ କାରଖାନାରୁ ୧୦ଟନ୍ କାଲସିୟମ୍ କର୍ବୋନେଟ୍ ପ୍ରସ୍ତୁତ ହେଉଛି । ଏହି କାରଖାନା ଚଳାଇବା ପାଇଁ ୫୦୦ କେ. ଭି. ଏ. ବିଦ୍ୟୁତ୍‌ଶକ୍ତି ଆବଶ୍ୟକ ହେଉଛି ଏବଂ ଏଥିରେ ୭୦ଜଣ କୁଶଳୀ, ଅର୍ଦ୍ଧ-କୁଶଳୀ ଓ ଅଣ-କୁଶଳୀ ଶ୍ରମିକ କାର୍ଯ୍ୟ କରୁଛନ୍ତି ।

## କୃଷି ଶ୍ରମିକଙ୍କୁ ସର୍ବନିମ୍ନ ମଜୁରୀ

ସର୍ବନିମ୍ନ ମଜୁରୀ ଆଇନରେ ଥିବା ବ୍ୟବସ୍ଥା ଅନୁଯାୟୀ କୃଷିକାର୍ଯ୍ୟରେ ନିଯୁକ୍ତ ଶ୍ରମିକମାନଂକ ପାଇଁ ନିର୍ଦ୍ଧାରିତ ସର୍ବନିମ୍ନ ଦୈନିକ ମଜୁରୀହାର ୬ଟଂକାରୁ ଟ୬.୫୦ ପଇସାକୁ ବୃଦ୍ଧି କରାଯାଇଛି ।

ଚଳିତ ଆର୍ଥିକ ବର୍ଷର ଫେବୃଆରୀ ମାସ ଶେଷସୁଦ୍ଧା ସଂପୃକ୍ତ ଆଇନପାଇଁ ନିଯୁକ୍ତ ଇନ୍‌ସପେକ୍ଟରମାନେ ୧୨,୮୯୩ଟି ଘଟଣା ତନଖି କରିଥିଲେ ଏବଂ ସେହି ଆଇନରେ ଥିବା ବ୍ୟବସ୍ଥାକୁ ଲଂଘନ କରାଯାଇଥିବା ୧୦,୨୬୬ଟି ଘଟଣା ଧରାପଡ଼ିଥିଲା । ସେହିସ୍ଥାନରେ ସଂପୃକ୍ତ କୃଷି ଶ୍ରମିକମାନଂକୁ ୧ଲକ୍ଷ ୯୯ହଜାର ୮୬୩ଟଂକା ଆଦାୟ କରାଯାଇ ଦିଆଯାଇ ଥିଲା ।

କୃଷି ଶ୍ରମିକଂକୁ ସେମାନଙ୍କ ଅଧିକାର ଓ କର୍ତ୍ତବ୍ୟ ସଂପର୍କରେ ଅବହିତ କରାଇ ସେମାନଙ୍କୁ ସଂଘବଦ୍ଧ ହେବାର ସାହାଯ୍ୟ କରିବା ନିମନ୍ତେ ରାଜ୍ୟର ୮୦ଟି ଅନଗ୍ରସର ବ୍ଲକ୍‌ରେ ୮୦ଜଣ ଅବୈତନିକ ସଂଗଠକଂକ ନିଯୁକ୍ତି ବ୍ୟବସ୍ଥା କରାଯାଇଛି । ସେଥିମଧ୍ୟରୁ ୬୯ଜଣ ନିଯୁକ୍ତିପାଇ କାର୍ଯ୍ୟ କରୁଛନ୍ତି । ଏହାଛଡ଼ା କେନ୍ଦ୍ରସରକାରଂକ ସହାୟତାରେ ୬୫ଟି ଗ୍ରାମ୍ୟ ଶ୍ରମ ନିରୀକ୍ଷକଂକୁ ରାଜ୍ୟରେ ଥିବା ଆଦିବାସୀ ଓ ହରିଜନ ବହୁଳ ବ୍ଲକ୍‌ମାନଂକରେ ନିଯୁକ୍ତିଦେବାପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି ।

## ରାଜ୍ୟରେ ଅଧିକ ବ୍ୟାଙ୍କଶାଖା

ଷଷ୍ଠଯୋଜନାରେ ଗ୍ରାମାଂଚଳ ଲୋକମାନଂକୁ ଅଧିକ ବ୍ୟାଂକସେବା ଯୋଗାଇଦେବା ନିମନ୍ତେ ବିଭିନ୍ନ ବ୍ୟବସାୟିକ ବ୍ୟାଙ୍କ୍, ବିଶେଷତଃ ଭାରତୀୟ ଷ୍ଟେଟ୍‌ବ୍ୟାଂକ୍, ଜାତୀୟକରଣ ଓ ଅନ୍ୟାନ୍ୟ ଘରୋଇ ଉଦ୍ୟମରେ ଚାଲୁଥିବା ବ୍ୟାଙ୍କ୍ ଏବଂ ଆଂଚଳିକ ଗ୍ରାମ୍ୟବ୍ୟାଂକ୍ ତରଫରୁ ରାଜ୍ୟରେ ଅଧିକ ଶାଖା ଖୋଲାଯାଇଛି ।

ଷଷ୍ଠଯୋଜନା ଆରମ୍ଭବେଳକୁ ଏଗୁଡ଼ିକର ମୋଟ୍ ସଂଖ୍ୟା ୭୬୬ଥିବାବେଳେ ଗତ ସେପ୍‌ଟେମ୍ବର ଶେଷସୁଦ୍ଧା ଏହା ୧,୫୦୫କୁ ବୃଦ୍ଧି ପାଇଛି । ଏହି ସମୟ ସୁଦ୍ଧା ଭାରତୀୟ ଷ୍ଟେଟ୍ ବ୍ୟାଙ୍କ୍ ତରଫରୁ ୩୨୦ଟି, ଜାତୀୟକରଣ ଓ ଅନ୍ୟାନ୍ୟ ବ୍ୟାଙ୍କ୍ ତରଫରୁ ୫୨୪ଟି ଓ ଆଂଚଳିକ ଗ୍ରାମ୍ୟ ଘରୋଇ ବ୍ୟାଙ୍କ୍ ତରଫରୁ ୬୬୯ଟି ଶାଖା ଖୋଲାଯାଇଛି ।

ଷଷ୍ଠଯୋଜନା ଶେଷସୁଦ୍ଧା ଗ୍ରାମାଂଚଳ, ଅର୍ଦ୍ଧ-ସହରାଂଚଳ ପ୍ରଭୃତିରେ ଆହୁରି ଅଧିକ ବ୍ୟାଙ୍କ୍ ଶାଖା ଖୋଲିଯାଇ ୧୯୮୧ ଜନଗଣନା ଭିତ୍ତିରେ ପ୍ରତ୍ୟେକ ଶାଖା ପିଛା ୧୭ ହଜାର ଲୋକଙ୍କ ସେବା କରିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

## କାଜୁବୃକ୍ଷ ଦ୍ୱାରା ଦରିଦ୍ରତମ ପରିବାର ଉପକୃତ

କାଜୁବୃକ୍ଷ ମାଧ୍ୟମରେ ଗତବର୍ଷ ସର୍ବମୋଟ ୨୧,୬୮୭ଟି ଦରିଦ୍ରତମ ପରିବାରଙ୍କୁ ଅର୍ଥନୈତିକ ଥଇଥାନ କରାଯାଇଛି । ୧୧,୨୪୦ ହେକ୍ଟର ଅନାବାଦୀ ଜମିରେ ନୂଆକରି ଏହି ବୃକ୍ଷ କରାଯାଇ ୧୦,୮୮୭ଟି ପରିବାରଙ୍କୁ ବଣ୍ଟାଯାଇଛି ଏବଂ କୃଷି ବିଭାଗର ମୃତ୍ତିକା ସଂରକ୍ଷଣ ସଂସ୍ଥା ଦ୍ୱାରା ଆଗରୁ ବୃକ୍ଷ କରାଯାଇଥିବା ୯,୪୧୫ ହେକ୍ଟର କାଜୁଜମି ୧୦,୮୦୦ଟି ପରିବାରଙ୍କୁ ଯୋଗାଇ ଦିଆଯାଇଛି ।

## ପ୍ରଥମ ଲୁହାକଟା ଆରି କାରଖାନା

ପ୍ରଥମ ଥର ପାଇଁ ଓଡ଼ିଶାର ମଂଚେଶ୍ୱର ଶିଳ୍ପାଞ୍ଚଳରେ ଏକ ଲୁହା କଟା ଆରି (ଧାତବ ପଦାର୍ଥ କାଟିବା କରତ ବ୍ଲେଡ୍) ଉତ୍ପାଦନ ଆରମ୍ଭ ହୋଇଛି । ୯୯ ଲକ୍ଷ ୩୫ ହଜାର ଟଙ୍କା ବିନିଯୋଗ କରାଯାଇଥିବା ଏହି କାରଖାନାରୁ ୧୯୮୪ ମସିହା ଜୁନର ମାସରେ ବ୍ୟବସାୟିକ ଭିତ୍ତିରେ ଉତ୍ପାଦନ ଆରମ୍ଭ କରାଯାଇଛି । ୧୯୮୩ ମସିହା ଡିସେମ୍ବର ମାସରେ ଏହି ସଂସ୍ଥାକୁ କାରଖାନା ଘର ଯୋଗାଇ ଦିଆଯିବା ପରେ ମାସକ ମଧ୍ୟରେ, ଅର୍ଥାତ୍ ୧୯୮୪ ମସିହା ଜାନୁଆରୀ ମାସରେ ଯନ୍ତ୍ରପାତି ବସାଇବା ପାଇଁ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇଥିଲା ଏବଂ ୬ ମାସ ମଧ୍ୟରେ ଏଠାରୁ ଉତ୍ପାଦନ ଆରମ୍ଭ ହୋଇ-ପାରିଲା । ଏହି ପ୍ରକଳ୍ପ ପାଇଁ ଇପିକଲ୍ ପକ୍ଷରୁ ୪୦ ଲକ୍ଷ ଟଙ୍କା ଓ ଓଡ଼ିଶା ଅର୍ଥ ନିଗମ ପକ୍ଷରୁ ୨୫ ଲକ୍ଷ ଟଙ୍କା ମିଆଦୀ ଋଣ ଯୋଗାଇ ଦେବାର ବ୍ୟବସ୍ଥା କରାଗଲା ଏବଂ ଏ ପର୍ଯ୍ୟନ୍ତ ଇପିକଲ୍‌ରୁ ୩୦ ଲକ୍ଷ ଟଙ୍କା ଓ ଓଡ଼ିଶା ଅର୍ଥ ନିଗମରୁ ୨୧ ଲକ୍ଷ ଟଙ୍କା ଋଣ ଯୋଗାଇ ଦିଆସରିଗଲାଣି ।

ଏହି କାରଖାନାରୁ ବାର୍ଷିକ ୮୧ ଲକ୍ଷ ଧାତବ ପଦାର୍ଥ କାଟିବା କରତ ବ୍ଲେଡ୍ ଏବଂ ୪୦ ଲକ୍ଷ ମିଟର ମେଟାଲ କଟିଂ ବ୍ୟାଣ୍ଡ ସଅ(କରତ) ଉତ୍ପାଦନ କରିବାର ଲକ୍ଷ୍ୟ ରଖାଯାଇଥିଲେ ମଧ୍ୟ କାରଖାନାର ସଂପ୍ରସାରଣ କରାଯାଇ ଏଠାରୁ ଦାଢ଼ି କାଟିବା ବ୍ଲେଡ୍, ସ୍ୱତନ୍ତ୍ର ଧରଣର ଛୁରୀ ଓ ଅନ୍ୟାନ୍ୟ ଉନ୍ନତ ଧରଣର ବ୍ଲେଡ୍ ଉତ୍ପାଦନ କରାଯିବ ବୋଲି କାରଖାନାର ମ୍ୟାନେଜିଂ ଡାଇରେକ୍ଟର ଶ୍ରୀ ଏଚ୍. ପି. ଗୁହ ସୂଚନା ଦେଇଛନ୍ତି । ଏଥିପାଇଁ ଆବଶ୍ୟକୀୟ ଅନୁମତିପତ୍ର ମିଳିସାରିଛି ।

ଏପରି ଏକ ମଧ୍ୟମ ଶିଳ୍ପ ପ୍ରକଳ୍ପ ଆମ ରାଜ୍ୟରେ ପ୍ରଥମ ଥର ପାଇଁ ପ୍ରତିଷ୍ଠା କରାଯାଇଛି । ଏହା କେବଳ ଓଡ଼ିଶାରେ କାହିଁକି, ପୂର୍ବାଞ୍ଚଳର ପ୍ରଥମ କାରଖାନା ରୂପେ ବିବେଚିତ ହେଉଛି । ଅବଶ୍ୟ ଏଥିପୂର୍ବରୁ ପଶ୍ଚିମବଙ୍ଗରେ ଏପରି ଏକ କାରଖାନା ଥିଲା ଏବଂ ତାହା ଇତିମଧ୍ୟରେ

## ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର

ରାଜ୍ୟର କଂପ୍ୟୁଟର ନୀତି ପ୍ରଣୟନ ଓ ସୁପାରିଶ କରିବା ପାଇଁ ରାଜ୍ୟରେ ଗୋଟିଏ କଂପ୍ୟୁଟର ପ୍ରୟୋଗ କେନ୍ଦ୍ର ସ୍ଥାପନ କରାଯାଇଛି ଏହି କେନ୍ଦ୍ର ଉପଯୋଗ କରିବା ପାଇଁ ବିଭିନ୍ନ ବିଭାଗମାନଙ୍କୁ ଚିହ୍ନଟ କରିବା ସଙ୍ଗେ ସଙ୍ଗେ କଂପ୍ୟୁଟର ବ୍ୟବହାର ପାଇଁ ଚେତନା ସୃଷ୍ଟି କରିବ । ଏହା ରାଜ୍ୟରେ ଗଢ଼ି ଉଠୁଥିବା କଂପ୍ୟୁଟର ସୁବିଧା ସୁଯୋଗର ବ୍ୟବହାର କରିବାରେ ସାହାଯ୍ୟ କରିବ । ଏହା ସହିତ ସୁଦୂର ପର୍ଯ୍ୟବେକ୍ଷଣ ତଥ୍ୟ ଏବଂ ଚିତ୍ର ବ୍ୟାଖ୍ୟା କାର୍ଯ୍ୟ ମଧ୍ୟ କଂପ୍ୟୁଟର ମାଧ୍ୟମରେ କରାଯିବ ।

ଏହାକୁ ସୋସାଇଟି ରେଜିଷ୍ଟ୍ରେସନ ଆକ୍ଟ ଅନୁଯାୟୀ ଗତ ମାର୍ଚ୍ଚ ୨୧ ତାରିଖରେ ରେଜିଷ୍ଟ୍ରିଭୁକ୍ତ କରାଯାଇଛି । ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ଲଳାଟେନ୍ଦୁ ପରିଡ଼ାଙ୍କ ଅଧ୍ୟକ୍ଷତାରେ ଏହାର ପରିଚାଳନା ପରିଷଦ ଗଠନ କରାଯାଇଛି । ସର୍ବଶ୍ରୀ ଆର. କେ. ଭୁଜବଳ, ଏସ୍. ବି. ମିଶ୍ର, ଏ. ବି. ତ୍ରିପାଠୀ, ଜି. ବି. ମୁଖାର୍ଜୀ, ଏସ୍. ବି. ନନ୍ଦ ଓ ଏଚ୍. କେ. ସିଂହ ପ୍ରମୁଖ ଏହି ପରିଷଦର ସଭ୍ୟ ଏବଂ ଡକ୍ଟର ସଦାନନ୍ଦ ତରାଇ ଏହାର ସଭ୍ୟ- ସଂପାଦକ ରହିଛନ୍ତି । ଏହି ପରିଷଦରେ କେନ୍ଦ୍ର ସରକାରଙ୍କ ଇଲୋକ୍‌ଟ୍ରୋନିକ୍ସ ବିଭାଗର ଜଣେ ପ୍ରତିନିଧି ମଧ୍ୟ ସଦସ୍ୟ ରହିବେ ।

## ଜଙ୍ଗଲ ବଞ୍ଚିଲେ ଆଦିବାସୀ ବଞ୍ଚିବ

"ଜଙ୍ଗଲ ବଂଚିଲେ ଆଦିବାସୀ ବଂଚିବ ଓ ଆଦିବାସୀ ବଞ୍ଚିଲେ ଜଙ୍ଗଲ ବଂଚିବ । ବର୍ତ୍ତମାନ ଯେଉଁଭଳି ଜଙ୍ଗଲକୁ ନଷ୍ଟ କରାଯାଉଛି ଆଉ କିଛି ବର୍ଷପରେ ମନୁଷ୍ୟ ଯେତେବେଳେ ଜଙ୍ଗଲର ଆବଶ୍ୟକତା ଅନୁଭବ କରିବ, ସେତେବେଳେକୁ ଅନୁତାପ ଦୁଃଖ ଓ ବ୍ୟଗ୍ରତା ଛଡ଼ା କିଛି ନଥିବ ।" ଏହି ବାର୍ତ୍ତାକୁ ଗତ ମାର୍ଚ୍ଚ ୧୦ ତାରିଖଠାରୁ ୨୪ ତାରିଖ ପର୍ଯ୍ୟନ୍ତ ଫୁଲବାଣୀ ଜିଲ୍ଲାର ଆଦିବାସୀ ଗ୍ରାମମାନଙ୍କରେ ୧୦ ଜଣ ଅନ୍ଧ ବାଳକଙ୍କ ସହିତ ୫ ଜଣ ଆଦିବାସୀ ବାଳକ ପ୍ରଚାର କରିଛନ୍ତି । ସେମାନେ ବାଲିଗୁଡ଼ାଠାରୁ କୋଟଗଡ ପର୍ଯ୍ୟନ୍ତ ୫୪ କି. ମି. ରାସ୍ତା ପଦଯାତ୍ରା କରି ସଙ୍ଗୀତ, କୀର୍ତ୍ତନ ଓ ଦାସକାଠିଆ ମାଧ୍ୟମରେ ଲୋକମାନଙ୍କ ମଧ୍ୟରେ ଜଙ୍ଗଲ ଓ ପରିବେଶ ସୁରକ୍ଷା ସଂପର୍କରେ ବୁଝାଇଥିଲେ । ଉଭୟ ଓଡ଼ିଆ ଓ ସ୍ଥାନୀୟ କୁଇ ଭାଷାରେ ଉଚିତ ଲୋକଗୀତ ଏବଂ ଅନ୍ଧବାଳକମାନଙ୍କ ପରିବେଷଣ ଭଙ୍ଗୀ ଲୋକମାନଙ୍କ ମଧ୍ୟରେ ଏହି ବାର୍ତ୍ତା ଗଭୀର ରେଖାପାତ କରିଥିବାର ଜଣାଯାଉଛି । ଏହି ଦଳର କାର୍ଯ୍ୟକ୍ରମକୁ ଦେଖିବା ପାଇଁ ପ୍ରତ୍ୟେକ ସ୍ଥାନରେ ବହୁ ସଂଖ୍ୟକ ଦର୍ଶକ ଉପସ୍ଥିତ ହେଉଥିଲେ । ପଦଯାତ୍ରୀ ଦଳକୁ ୨ଜଣ ସ୍ତ୍ରୀ ଓ ୨ଜଣ ପୁରୁଷ ସାହାଯ୍ୟ କରିଥିଲେ । ଏହି କାର୍ଯ୍ୟକ୍ରମର ସଫଳତା ପାଇଁ ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ତରଫରୁ ଆବଶ୍ୟକୀୟ ସାହାଯ୍ୟ ପ୍ରଦାନ କରାଯାଇଥିଲା ।

## ଗୋତି ଶ୍ରମିକ ମୁକ୍ତି

ଗୋତି ଶ୍ରମିକ ପ୍ରଥା ଉଚ୍ଛେଦ ଆଇନ ଅନୁଯାୟୀ ଗତ ଡିସେମ୍ବର ସୁଦ୍ଧା ରାଜ୍ୟରେ ସର୍ବମୋଟ୍ ୩୪ ହଜାର ୩୬୯ ଜଣ ଗୋତିମୁକ୍ତ ଶ୍ରମିକଙ୍କ ମଧ୍ୟରୁ ୨୨ ହଜାର ୮୮୦ ଜଣଙ୍କୁ ଆର୍ଥିକ ସାହାଯ୍ୟ, ଜମି ଏବଂ ଅନ୍ୟାନ୍ୟ ସାହାଯ୍ୟ ଦେଇ ଉପଯୁକ୍ତ ଭାବରେ ଥଇଥାନ କରାଯାଇଛି । ସେମାନଙ୍କ ମଧ୍ୟରୁ ଚଳିତ ଆର୍ଥିକ ବର୍ଷର ଡିସେମ୍ବର ମାସ ଶେଷ ସୁଦ୍ଧା ଗୋତିମୁକ୍ତ ହୋଇଥିବା ୩,୯୮୬ ଜଣ ଶ୍ରମିକଙ୍କ ମଧ୍ୟରୁ ୩,୦୫୯ ଜଣ ଗୋତିମୁକ୍ତ ଶ୍ରମିକଙ୍କୁ ଉପଯୁକ୍ତ ଭାବେ ଥଇଥାନ କରାଯାଇଛି ଏବଂ ଏ ବାବଦରେ ୧ କୋଟି ୬୭ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇଛି ।

---

## ଗୋବର ଗ୍ୟାସ୍ ପ୍ଲାଣ୍ଟ ପାଇଁ ପୁରସ୍କାର

ଗୋବର ଗ୍ୟାସ ପ୍ଲାଣ୍ଟ ବସାଇବା କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ପାଇଁ ଉତ୍କୃଷ୍ଟ ବିବେଚିତ ପଞ୍ଚାୟତ ସମିତି ବ୍ଲକ, ଜିଲ୍ଲା ଓ ରାଜ୍ୟମାନଙ୍କୁ ପୁରସ୍କାର ପ୍ରଦାନ କରାଯିବ । ଏ କ୍ଷେତ୍ରରେ ୧୯୮୪-୮୫ ମସିହାର ଅଗ୍ରଗତି ଉପରେ ଭିତ୍ତିକରି ରାଜ୍ୟସ୍ତରରେ ଉତ୍କୃଷ୍ଟ ପଞ୍ଚାୟତ ସମିତି ବ୍ଲକ ଓ ଜିଲ୍ଲାଗୁଡ଼ିକ ବଛାଯିବ । କେନ୍ଦ୍ର ସରକାରଙ୍କ ଅଣ-ପାରମ୍ପରିକ ଶକ୍ତି ଉତ୍ସ ବିଭାଗ ଦ୍ୱାରା ଉତ୍କୃଷ୍ଟ ରାଜ୍ୟ କେନ୍ଦ୍ର ଶାସିତ ଅଞ୍ଚଳ ବଛାଯିବ । ଚଳିତ ଆର୍ଥିକ ବର୍ଷରେ ସର୍ବାଧିକ ଗୋବର ଗ୍ୟାସ ପ୍ଲାଣ୍ଟ ବସାଇଥିବା ପଞ୍ଚାୟତ ସମିତି ବ୍ଲକକୁ ୨୫ ହଜାର ଟଙ୍କା ଓ ଜିଲ୍ଲାକୁ ୫୦ ହଜାର ଟଙ୍କା ପୁରାସ୍କର ପ୍ରଦାନ କରାଯିବ । ସେହିପରି ଜାତୀୟ ସ୍ତରରେ ରାଜ୍ୟଗୁଡ଼ିକର ଧାର୍ଯ୍ୟ ଲକ୍ଷ୍ୟ ଅନୁଯାୟୀ ସଫଳତାକୁ ଭିତ୍ତିକରି ୧୦ ହଜାର ବା ତଦୂର୍ଦ୍ଧ୍ୱ ଗୋବର ଗ୍ୟାସ ପ୍ଲାଣ୍ଟ ବସାଇବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରିଥିବା ରାଜ୍ୟକୁ ୨ ଲକ୍ଷ ଟଙ୍କା ପ୍ରଥମ ପୁରସ୍କାର ଓ ୧ ଲକ୍ଷ ୫୦ ହଜାର ଟଙ୍କା ଦ୍ୱିତୀୟ ପୁରସ୍କାର ୧ ହଜାରରୁ ୧୦ ହଜାର ମଧ୍ୟରେ ଲକ୍ଷ୍ୟ ଧାର୍ଯ୍ୟ କରିଥିବା ରାଜ୍ୟକୁ ୧ ଲକ୍ଷ ୫୦ ହଜାର ଟଙ୍କା ପ୍ରଥମ ପୁରସ୍କାର ଓ ୧ ଲକ୍ଷ ଟଙ୍କା ଦ୍ୱିତୀୟ ପୁରସ୍କାର ଏବଂ ଏକ ହଜାରରୁ କମ୍ ଲକ୍ଷ୍ୟ ଧାର୍ଯ୍ୟ କରିଥିବା ରାଜ୍ୟକୁ ୫୦ ହଜାର ଟଙ୍କା ଓ ୩୦ ହଜାର ଟଙ୍କା ଯଥାକ୍ରମେ ପ୍ରଥମ ଓ ଦ୍ୱିତୀୟ ପୁରସ୍କାର ପ୍ରଦାନ କରାଯିବ । ଯେଉଁ ପଞ୍ଚାୟତ ସମିତି ବ୍ଲକ ଓ ଜିଲ୍ଲାଗୁଡ଼ିକ ୧୯୮୪-୮୫ ମସିହାରେ ଯଥାକ୍ରମେ ସର୍ବନିମ୍ନ ୫୦ ଓ ୨୦୦ ଗୋବର ଗ୍ୟାସ ପ୍ଲାଣ୍ଟ ବସାଇଥିବେ, ସେଗୁଡ଼ିକ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିପାରିବେ ।

---

## ରାଜ୍ୟରେ ଚିନାବାଦାମ ଚାଷ

ବିଂଶସୂତ୍ରୀ କାର୍ଯ୍ୟକ୍ରମାନୁଯାୟୀ ରାଜ୍ୟରେ ତୈଳବୀଜ ଉତ୍ପାଦନ ବୃଦ୍ଧି ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି । ବିଭିନ୍ନ ତୈଳବୀଜ ମଧ୍ୟରୁ ଚିନାବାଦାମ ଚାଷ ଆମ ରାଜ୍ୟରେ ବିଶେଷ ଫଳପ୍ରଦ ହେଉଛି ଏବଂ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ହେକ୍ଟର ପିଛା ଉତ୍ପାଦନ କ୍ଷେତ୍ରରେ ଆମ ରାଜ୍ୟରେ ସର୍ବାଧିକ । ନଦୀପଠା ଓ ବନ୍ୟାପ୍ଲାବିତ ଜମିରେ ଏହି ଫସଲ ଖୁବ ଭଲ ହେଉଛି । ରବିଋତୁରେ କଟକ ଜିଲ୍ଲା ପୁରୀ ଜିଲ୍ଲା ଏବଂ ଅନ୍ୟାନ୍ୟ ଜଳସେଚିତ ଅଞ୍ଚଳରେ ଚିନାବାଦାମ ଚାଷପାଇଁ ମଞ୍ଜି, ସାର ଓ ଅନ୍ୟାନ୍ୟ କୃଷି ସାମଗ୍ରୀ ଯୋଗାଇ ଦିଆଯାଇ ଚାଷୀମାନଙ୍କୁ ଉତ୍ସାହିତ କରାଯାଉଛି ।

ବିଗତ ୬ବର୍ଷ ମଧ୍ୟରେ ଅର୍ଥାତ ୧୯୭୬-୭୭ଠାରୁ ୧୯୮୩-୮୪ ମସିହା ମଧ୍ୟରେ ଚିନାବାଦାମ ଚାଷ ୧ ଲକ୍ଷ ୪ ହଜାର ହେକ୍ଟରରୁ ୨ ଲକ୍ଷ ୫୮ ହଜାର ହେକ୍ଟରକୁ ବୃଦ୍ଧି ପାଇଛି । ତଦନୁଯାୟୀ ଉତ୍ପାଦନ ମଧ୍ୟ ୧ ଲକ୍ଷ ୧୮ ହଜାର ଟନ୍‌ରୁ ୩ ଲକ୍ଷ ୯୯ ହଜାର ଟନକୁ ବୃଦ୍ଧି ପାଇଛି ।

---

## ପ୍ରଥମ ଇଲେକ୍‌ଟ୍ରୋନିକସ୍ କାପାସିଟର କାରଖାନାରୁ ଉତ୍ପାଦନ

ଚନ୍ଦକା ଶିଳ୍ପାଞ୍ଚଳରେ ୧ କୋଟି ୧୪ ଲକ୍ଷ ଟଙ୍କା ମୂଳଧନ ବିନିଯୋଗରେ ପ୍ରତିଷ୍ଠିତ ଜେ. ବି. ଏସ. କାପାସିଟର କାରଖାନାରୁ ୧୯୮୪ ମସହା ପ୍ରଥମ ଭାଗରୁ ଉତ୍ପାଦନ ଆରମ୍ଭ ହୋଇଛି ଏବଂ ଇତି ମଧ୍ୟରେ ୮୦ ଲକ୍ଷ ଟଙ୍କା ମୂଲ୍ୟର କାପାସିଟର ବିଭିନ୍ନ ଇଲେକ୍‌ଟ୍ରୋନିକ ଯନ୍ତ୍ରପାତି ଉତ୍ପାଦନ କରୁଥିବା ସଂସ୍ଥାକୁ ଯୋଗାଇ ଦିଆଯାଉଛି । ଏଠାରେ ଉତ୍ପାଦିତ କାପାସିଟର ସବୁ ଆଧୁନିକ ପ୍ରଣାଳୀରେ ପ୍ରସ୍ତୁତ କରାଯାଇ ଆବଶ୍ୟକୀୟ ପରୀକ୍ଷା ନିରୀକ୍ଷା କରାଯାଏ ଓ ତା'ପରେ ବାହାରକୁ ଛଡ଼ାଯାଏ । ମର୍ଫି, ବୁସ୍, ଟେଲିରାମା ପ୍ରଭୃତି ଖ୍ୟାତନାମା ରେଡ଼ିଓ ପ୍ରସ୍ତୁତକାରୀ କାରଖାନା ଏହି କାପାସିଟର କିଣିବା ଆରମ୍ଭ କରିଦେଇଛନ୍ତି ଏବଂ ଅନ୍ୟାନ୍ୟ ବଡ଼ ବଡ଼ କମ୍ପାନୀମାନେ ଆଗ୍ରହ ପ୍ରକାଶ କରିଛନ୍ତି । ଏଠାରୁ ବାର୍ଷିକ ୭ କୋଟି କାପାସିଟର ପ୍ରସ୍ତୁତ କରାଯିବାର ଲକ୍ଷ୍ୟ ରହିଛି ଏବଂ ଏଠାରେ ୧୨୦ ଜଣ ବ୍ୟକ୍ତିଙ୍କୁ ନିଯୁକ୍ତି ସୁବିଧା ମିଳିପାରିବ ବୋଲି କୁହାଯାଉଛି ।

ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ ଜଣେ ଉତ୍ସାହୀ ମହିଳା ଶିଳ୍ପୋଦ୍ୟୋଗୀ ଶ୍ରୀମତୀ କମଳିନୀ ମହାପାତ୍ର ଏହି ଅନୁଷ୍ଠାନର ପରିଚାଳନା ନିର୍ଦ୍ଦେଶିକା ଭାବରେ ଅତ୍ୟନ୍ତ ସାଫଲ୍ୟ ଅର୍ଜନ କରିପାରିଛନ୍ତି । କାରଖାନାରୁ ସର୍ବାଧିକ ଉତ୍ପାଦନ କ୍ଷମତା ହାସଲପାଇଁ ସେ ନିରନ୍ତର ଉଦ୍ୟମ କରିବା ସଙ୍ଗେ ସଙ୍ଗେ ଶ୍ରମିକମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ସଚେତନ ଅଛନ୍ତି । ଏପରି ଏକ କାରଖାନା କେବଳ ଓଡ଼ିଶାରେ ନୁହେଁ, ପୂର୍ବାଞ୍ଚଳ ରାଜ୍ୟ ମଧ୍ୟରେ ସର୍ବ ପ୍ରଥମ । ଆମ ରାଜ୍ୟରେ ପ୍ରସ୍ତୁତ କୋଣାର୍କ ଟେଲିଭିଜନ ଓ ଅନ୍ୟାନ୍ୟ ଇଲେକ୍‌ଟ୍ରୋନିକ୍ ଯନ୍ତ୍ରପାତି ଉତ୍ପାଦନକାରୀମାନେ ଏହି ସଂସ୍ଥାରୁ ଯନ୍ତ୍ରାଂଶ କିଣିବାକୁ ଆଗ୍ରହ ପ୍ରକାଶ କରିଥିବା ବିଷୟ ଶ୍ରୀମତୀ ମହାପାତ୍ରଙ୍କ ନିକଟରୁ ପ୍ରକାଶ ।

---

## ବୀମାଭୁକ୍ତ ଶିଳ୍ପ ଶ୍ରମିକ ଚିକିତ୍ସିତ

୧୯୮୪ ମସିହା ଅପ୍ରେଲ ଏକ ତାରିଖଠାରୁ ଡିସେମ୍ବର ମାସ ଶେଷସୁଦ୍ଧା ରାଜ୍ୟର ୫ ଲକ୍ଷ ୫୪ ହଜାର ୫୫୨ ଜଣ ବୀମାଭୁକ୍ତ ଶିଳ୍ପ ଶ୍ରମିକଙ୍କୁ ଚିକିତ୍ସା କରାଯାଇଛି । ଏଥିମଧ୍ୟରୁ

୪୨,୫୫୧ ଜଣ ଶ୍ରମିକଙ୍କୁ ବିଶେଷଜ୍ଞ ଚିକିତ୍ସା ପାଇଁ ଡ଼ାକ୍ତରଖାନାକୁ ପଠାଯାଇଥିଲା । ଏଥିପାଇଁ ଏକ ଲକ୍ଷ ୯୭ ହଜାର ଟଙ୍କା ବ୍ୟୟ କରାଯାଇଥିଲା । ଏହି ସମୟ ମଧ୍ୟରେ ୧୮୨୬ ଜଣଙ୍କୁ ଯକ୍ଷ୍ମା ଏବଂ ୪୩୫ ଜଣଙ୍କୁ କ୍ୟାନସର ରୋଗ ପାଇଁ ଚିକିତ୍ସା କରାଯାଇଥିଲା ।

## ଓଡ଼ିଶାରେ ଆଣବିକ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ସମ୍ଭାବନା

ଦେଶର ପୂର୍ବଭାଗରେ ପ୍ରତିଷ୍ଠିତ ହେବାକୁ ଥିବା ଆଣବିକ ବିଦ୍ୟୁତ୍ କେନ୍ଦ୍ର ସ୍ଥାନ ନିରୂପଣ ନିମନ୍ତେ ଗଠିତ କମିଟିର କାର୍ଯ୍ୟକାରୀ ଗୋଷ୍ଠୀର ସଭ୍ୟମାନେ ଗତ ଜାନୁୟାରୀ ମାସରେ ଓଡ଼ିଶା ଗସ୍ତକରି ବିଭିନ୍ନ ସମ୍ଭାବ୍ୟ ସ୍ଥାନ ପରିଦର୍ଶନ କରିଥିଲେ ଏବଂ ପ୍ରାରମ୍ଭିକ ଅନୁସନ୍ଧାନ ପରେ ମୁଖ୍ୟସ୍ଥାନ ନିରୂପଣ କମିଟିର ସଭ୍ୟମାନେ ଚଳିତ ମାସ ଦ୍ୱିତୀୟ ସପ୍ତାହରେ ଏହି ସ୍ଥାନଗୁଡ଼ିକ ପରିଦର୍ଶନ କରିଥିଲେ ।

କେନ୍ଦ୍ର ସରକାରଙ୍କ ଆଣବିକ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ମାଷ୍ଟର ପ୍ଲାନ ଅନୁଯାୟୀ ଆଗାମୀ ୧୫ ବର୍ଷ ମଧ୍ୟରେ ଦେଶରେ ୭୮୨୦ ମେଗାଓ୍ୱାଟ ଶକ୍ତି ସମ୍ପନ୍ନ ଆଣବିକ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା କରାଯିବ । ପ୍ରଥମ ଦଫାରେ ୨୩୫ ମେଗାଓ୍ୱାଟ ଶକ୍ତି ବିଶିଷ୍ଟ ୧୦ ଗୋଟି ୟୁନିଟ ଏବଂ ଦ୍ୱିତୀୟ ଦଫାରେ ୫୦୦ ମେଗାଓ୍ୱାଟ ଶକ୍ତି ବିଶିଷ୍ଟ ୧୦ ଗୋଟି ୟୁନିଟ ପ୍ରତିଷ୍ଠା କରାଯିବାର କାର୍ଯ୍ୟକ୍ରମ ରହିଛି । ଏହାକୁ ମିଶାଇ ଦେଶର ସର୍ବମୋଟ ଆଣବିକ ବିଦ୍ୟୁତ୍ ଶକ୍ତି ୧୦ ହଜାର ମେଗାଓ୍ୱାଟକୁ ବୃଦ୍ଧି ପାଇବ । ଅଳ୍ପଦିନ ତଳେ ଓଡ଼ିଶା ଗସ୍ତରେ ଆସିଥିବା ଆଣବିକ ବିଦ୍ୟୁତ୍ ବୋର୍ଡ ଚେୟାରମ୍ୟାନ ଡ଼କ୍ଟର ଏମ୍. ଆର୍. ଶ୍ରୀନିବାସନ୍ ରାଜ୍ୟ ମୁଖ୍ୟ ଶାସନ ସଚିବଙ୍କ ସହ ଆଲୋଚନା ବେଳେ ଏ ବିଷୟ ପ୍ରକାଶ କରିଥିଲେ । ଭାରତର ପୂର୍ବଭାଗରେ ଆଣବିକ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା କରିବା ସମ୍ବନ୍ଧୀୟ ସ୍ଥାନ ନିରୂପଣ କମିଟିର ଅଧ୍ୟକ୍ଷ ଭାବେ ଡ଼କ୍ଟର ଶ୍ରୀନିବାସନ୍ ଓଡ଼ିଶାର ବିଭିନ୍ନ ସମ୍ଭାବ୍ୟ ସ୍ଥାନ ପରିଦର୍ଶନ କଲାପରେ ଓଡ଼ିଶା ସରକାରଙ୍କ ବିଭିନ୍ନ ବିଭାଗୀୟ ଉଚ୍ଚପଦସ୍ଥ ଅଧିକାରୀଙ୍କ ସହ ଆଲୋଚନା କରିଥିଲେ । ଏ ବିଷୟରେ ସବିଶେଷ ତଥ୍ୟ ସଂଗ୍ରହ ନିମନ୍ତେ ସ୍ଥାନ ନିରୂପଣ କମିଟିର କାର୍ଯ୍ୟକାରୀ ଗୋଷ୍ଠୀର କେତେକ ସଭ୍ୟ ଅଳ୍ପଦିନ ମଧ୍ୟରେ ପୁନରାୟ ଓଡ଼ିଶା ଗସ୍ତରେ ଆସୁଥିବା ଜଣାଯାଇଛି । ଏହି ଆଞ୍ଚଳିକ ଆଣବିକ ବିଦ୍ୟୁତ୍ କେନ୍ଦ୍ରରେ ପ୍ରଥମ ଦଫାରେ ୯୪୦ ମେଗାଓ୍ୱାଟ ଏବଂ ଦ୍ୱିତୀୟ ଦଫାରେ ୧ ହଜାର ମେଗାଓ୍ୱାଟ ସଂସ୍ଥାପିତ ଶକ୍ତି ପ୍ରତିଷ୍ଠିତ ହେବା ଆଶା କରାଯାଏ ।

## କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ପାଇଁ ଫଳଚାଷ

ପ୍ରଧାନ ମନ୍ତ୍ରୀଙ୍କ ବ୍ୟାପକ କାର୍ଯ୍ୟକ୍ରମାନୁଯାୟୀ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ସେମାନଙ୍କ ଜମିରେ ଛୋଟ ଛୋଟ ଫଳଗଛ ଲଗାଇବା ପାଇଁ ଉତ୍ସାହିତ କରାଯାଉଛି । ଏଥି ସକାଶେ ଚାରା, ସାର, ଓ ଅନ୍ୟାନ୍ୟ ଆବଶ୍ୟକୀୟ କୃଷି ଯନ୍ତ୍ରପାତି ରିହାତି ହାରରେ ଯୋଗାଇ ଦିଆଯାଉଛି । ସମନ୍ୱିତ ପଲ୍ଲୀ ଉନ୍ନୟନ କାର୍ଯ୍ୟକ୍ରମରେ ଚାଷୀମାନଙ୍କୁ ଯେଉଁଳି ରିହାତି ପ୍ରଦାନ କରା-ଯାଉଛି, ଏହି କାର୍ଯ୍ୟକ୍ରମ ପାଇଁ ମଧ୍ୟ ସେଉଁଳି ରିହାତିର ବ୍ୟ... ରହିଛି । ୧୯୮୩-୮୪ ଠାରୁ ୧୯୮୪-୮୫ ସେପ୍ଟେ... ପର୍ଯ୍ୟନ୍ତ ପ୍ରାୟ ୨୪ଲକ୍ଷ ଗଛ ଏହି କାର୍ଯ୍ୟକ୍ରମରେ ଲଗାଗଲାଣି ।

## ପବନ ଚାଳିତ ବିଦ୍ୟୁତ୍ ପ୍ରକଳ୍ପ

ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା ଦ୍ୱାରା ଓ ରାଜ୍ୟ ବିଦ୍... ବୋର୍ଡର ସହାୟତାରେ ଖୁବ୍‌ଶୀଘ୍ର ପୁରୀଠାରେ ୫୦୦ କିଲୋ... ଶକ୍ତି ସଂପନ୍ନ ଏକ ବିଦ୍ୟୁତ୍ ପ୍ରକଳ୍ପ ସ୍ଥାପନ କରାଯାଉଛି । କେ... ସରକାରଙ୍କ ଅଣ ପାରଂପରିକ ଶକ୍ତି ଉତ୍ସ ବିଭାଗ ଏଥିପ... ଆବଶ୍ୟକୀୟ ମଞ୍ଜୁରୀ ପ୍ରଦାନ କରିସାରିଛନ୍ତି । ଏହି ବିଦ୍ୟୁ... ପ୍ରକଳ୍ପରେ ପ୍ରତ୍ୟେକ ୫୫ କିଲୋଓ୍ୱାଟ ଶକ୍ତି ସଂପନ୍ନ ୧୦ଟି ପବ... ଚାଳିତ ବିଦ୍ୟୁତ୍ ଜେନେରେଟର ଗବେଷଣା ଓ ପ୍ରଦର୍ଶନ ସକାଶ... ବସାଯିବ । ଏଗୁଡ଼ିକ ଡେନ୍‌ମାର୍କରୁ ଆମଦାନୀ କରାଯିବ... ଏହି ପ୍ରକଳ୍ପରୁ ଉତ୍ପାଦିତ ବିଦ୍ୟୁତ୍ ଶକ୍ତି ରାଜ୍ୟ ବିଦ୍ୟୁତ୍ ଗ୍ରିଡ୍... ଯୋଗାଇ ଦିଆଯିବ । ଏହାପରେ ରାଜ୍ୟରେ ଅନୁରୂପ ଶ... ସଂପନ୍ନ ଅନ୍ୟ ଏକ ପବନ ଚାଳିତ ବିଦ୍ୟୁତ୍ ପ୍ରକଳ୍ପ ବସାଯିବା... ମଧ୍ୟ ପ୍ରସ୍ତାବ ରହିଛି ।

## ଶାରୀରିକ ଅକ୍ଷମ ପିଲାଙ୍କ ପାଇଁ ଶିକ୍ଷା

ଶାରୀରିକ ଅକ୍ଷମ ପିଲାଙ୍କ ଶିକ୍ଷାଦାନ ପାଇଁ ରାଜ୍ୟରେ ମୋ... ୧୫ ଗୋଟି ଶିକ୍ଷାନୁଷ୍ଠାନ ରହିଛି ଏବଂ ଏଗୁଡ଼ିକରେ ମୋ... ୬୪୪ ଜଣ ପିଲା ଶିକ୍ଷାଲାଭ କରୁଛନ୍ତି । ଏହାଛଡ଼ା ଅକ୍ଷମ... ପିଲାମାନଙ୍କୁ ବୃତ୍ତିଗତ ଶିକ୍ଷା ଦେଇ ଆତ୍ମନିର୍ଭରଶୀଳ କରିବା... ପାଇଁ କଟକ ଜିଲ୍ଲାର ବାରଙ୍ଗ ଓ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରଠାରେ ଦୁଇଟି ବୃତ୍ତିଗତ ତାଲିମ କେନ୍ଦ୍ର କାର୍ଯ୍ୟକରୁଛି । ବାରଙ୍ଗଠାରେ ଥିବା ଅନୁଷ୍ଠାନଟି ରାଜ୍ୟ ବାଳ ବିକାଶ ସମିତି ଦ୍ୱାରା ପରିଚାଳିତ ହେଉଥିବା ସ୍ଥଳେ ବ୍ରହ୍ମପୁରଠାରେ ଥିବା କେନ୍ଦ୍ରଟି ଜିଲ୍ଲା ରେଡ୍‌କ୍ରସ ସୋସାଇଟି ଦ୍ୱାରା ପରିଚାଳିତ ହେଉଛି । ଏହି ଉଭୟ ତାଲିମ କେନ୍ଦ୍ରରେ ମୋଟ୍ ୫୫ ଜଣ ଶିକ୍ଷାର୍ଥୀ ତାଲିମ ପାଉଛନ୍ତି । ବାରଙ୍ଗ... ବୈଷୟିକ ତାଲିମ କେନ୍ଦ୍ରକୁ ରାଜ୍ୟ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ... ପୁନର୍ଗଠନ ବିଭାଗ ତରଫରୁ ବାର୍ଷିକ ୧ଲକ୍ଷ ଟଙ୍କା ଅନୁଦାନ ଦିଆଯାଉଛି ।

୧୯୮୪ ମସିହା ମାର୍ଚ୍ଚ ଶେଷ ସୁଦ୍ଧା ପ୍ରଥମ ଦଫାରେ ବାରଙ୍ଗ କେନ୍ଦ୍ରରୁ ବିଭିନ୍ନ ଧନ୍ଦାରେ ୪୨ ଜଣ ଅକ୍ଷମ ବ୍ୟକ୍ତି ତାଲିମ ପାଇଛନ୍ତି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏହି ତାଲିମ କେନ୍ଦ୍ରରେ ଶିକ୍ଷାର୍ଥୀମାନଙ୍କୁ ଆତ୍ମନିର୍ଭରଶୀଳ କରିବା ପାଇଁ ଦରଜୀ କାମ, ଫୁଲଖଡ଼ି ତିଆରି ଓ ନଡ଼ିଆକତା କାମରେ ତାଲିମ ଦିଆଯାଏ ।

## ନନ୍ଦନ କାନନରେ କଙ୍ଗାରୁ

ଅଷ୍ଟ୍ରେଲିଆରୁ ଦୁଇଟି ଛୋଟ କଙ୍ଗାରୁ ଅଣାଯାଇ ନନ୍ଦନ କାନନରେ ରଖାଯାଇଛି । ଏ ଦୁଇଟିକୁ ଅଷ୍ଟ୍ରେଲିଆର ସିଡ଼ନି ନିକଟବର୍ତ୍ତୀ ତରୋଙ୍ଗା ଚିଡ଼ିଆଖାନାରୁ ଉଡ଼ାଜାହାଜ ଯୋଗେ ବମ୍ବେ ଓ କଲିକତା ବାଟେ ଅଣାଯାଇଛି । ଅନେକ

ଦୂର ଆସିବା ପରେ ମଧ୍ୟ ସେମାନେ ବେଶ୍ ସୁସ୍ଥ ଅଛନ୍ତି । ସେମାନଙ୍କୁ ଦେଖିବାପାଇଁ ନନ୍ଦନ କାନନରେ ବେଶ୍ ଆଗ୍ରହ ଦେଖାଯାଉଛି ।

ଏହି ଜୀବମାନେ ତୃଣଭୋଜୀ ଅଟନ୍ତି ଏବଂ ଏମାନଙ୍କର ଆଗଗୋଡ଼ ଦୁଇଟି ଛୋଟ ଓ ବୃହତ୍ ଲାଞ୍ଜ ବିଶିଷ୍ଟ । ପଛଗୋଡ଼ ଦୁଇଟିରେ ସହଜରେ ଠିଆହୋଇ ପାରନ୍ତି ଓ ଦ୍ରୁତବେଗରେ ଡେଇଁ ଡେଇଁ ଯାଇପାରନ୍ତି । ଏହି ସମୟରେ ସେମାନେ ଲାଞ୍ଜଟିକୁ ମଧ୍ୟ ବ୍ୟବହାର କରିଥାନ୍ତି ଏବଂ ଡେଇଁବା ସମୟରେ ଆଗଗୋଡ଼ ଦୁଇଟିକୁ ଯାକି ଦିଅନ୍ତି । ମାଈ ଓ୍ୱାଲବିର ପେଟ ପାଖରେ ଗୋଟିଏ ଥଳି ଥାଏ ଓ ଛୋଟ ଛୁଆଗୁଡ଼ିକ ଏହି ଥଳିରେ ରହି ଖାଦ୍ୟଗ୍ରହଣ କରିଥାନ୍ତି । ମା କଙ୍ଗାରୁ ସେମାନଙ୍କୁ ଏହି ଥଳି ମଧ୍ୟରେ ରଖି ସହଜରେ ଡେଇଁ ଡେଇଁ ଅନେକ ଦୂର ଯାଇପାରେ ।

---

## କଲମୀ ଆମ୍ବଗଛ

ଉନ୍ନତ ଧରଣର ଆମ୍ବ ଉତ୍ପାଦନ ସକାଶେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବ୍ୟାପକ ଭାବେ କଲମୀ ବା ଇନ୍‌ସିଟୁ ପ୍ରଣାଳୀ ଅବଲମ୍ବନ କରାଯାଉଛି । ରାଜ୍ୟର ୮ଟି ଜିଲ୍ଲାରେ ପ୍ରାୟ ୧,୫୦୯ ହେକ୍ଟର ଜମିରେ ଆମଗଛ ଲଗାଗଲଣି । ପ୍ରାୟ ୩ ଲକ୍ଷ ୧୯ ହଜାର ଗଛରେ ଆଂଶିକ କଲମୀ କରାଯିବା ସଙ୍ଗେ ସଙ୍ଗେ ସର୍ବମୋଟ୍ ୧୧ ଲକ୍ଷ ୯ ହଜାର ଆମଗଛ ଲଗାଯାଇଛି । ଏହି କାର୍ଯ୍ୟକ୍ରମାନୁଯାୟୀ ୫,୫୦୦ଟି ପରିବାର ଉପକୃତ ହୋଇଛନ୍ତି ।

ଏହି କାର୍ଯ୍ୟକ୍ରମଟି ବିଶେଷ ଫଳପ୍ରଦ ହେଉଥିବାରୁ ବର୍ଷା ଉପରେ ନିର୍ଭର କରୁଥିବା ଅଞ୍ଚଳ, ବିଶେଷକରି କୋରାପଟ, କେନ୍ଦୁଝର, ଫୁଲବାଣୀ ଓ ମୟୂରଭଞ୍ଜ ଭଳି ଆଦିବାସୀ ବହୁଳ ଜିଲ୍ଲାମାନଙ୍କରେ ଏହି କାର୍ଯ୍ୟକ୍ରମ ପ୍ରସାର ପାଇଁ ଉତ୍ସାହିତ କରାଯାଉଛି ।

---

## ଶାରୀରିକ ଅକ୍ଷମମାନଙ୍କ ସମ୍ବନ୍ଧରେ

* ଭାରତ ବର୍ଷରେ ୯୦ ନିୟୁତ ଅନ୍ଧ, ମୂକ, ବଧିର ଓ ବିକଳାଙ୍ଗ ଅଛନ୍ତି ।
* ୧୯୮୧ ଜନଗଣନା ଅନୁଯାୟୀ ଓଡ଼ିଶାରେ ୬୧,୨୯୮ ଜଣ ଅନ୍ଧ, ମୂକ, ବଧିର ଓ ବିକଳାଙ୍ଗ ଅଛନ୍ତି ।
* ସଂପୂର୍ଣ୍ଣ ଦୃଷ୍ଟିଶକ୍ତି ହରାଇଥିବା ଲୋକଙ୍କ ସଂଖ୍ୟା ହେଉଛି ୨,୬୬୬୨ ଏବଂ ବିକଳାଙ୍ଗ ଓ ବଧିରଙ୍କ ସଂଖ୍ୟା ଯଥାକ୍ରମେ ୧୯,୯୧୧ ଓ ୧୩,୨୬୨ ।
* ପଙ୍ଗୁ ବା ଦୃଷ୍ଟିହୀନ ସରକାରୀ କର୍ମଚାରୀ ସେମାନଙ୍କ ମାସିକ ଦରମାର ଶତକଡ଼ା ୧୦ ଭାଗ ବା ସର୍ବୋଚ୍ଚ ୭୫ ଟଙ୍କା ପର୍ଯ୍ୟନ୍ତ ଯାତାୟାତ ଖର୍ଚ୍ଚ ପାଇଁ ଆର୍ଥିକ ସାହାଯ୍ୟ ପାଇପାରିବେ ।

## ଓଡ଼ିଶା ଶିଳ୍ପୋଦ୍ୟୋଗୀଙ୍କୁ ଜାତୀୟ ପୁରସ୍କାର

ରାଜ୍ୟର ନୂତନ ଶିଳ୍ପନୀତିରେ ଆକୃଷ୍ଟ ହୋଇ କେବଳ ଯେ ବହୁ ଶିଳ୍ପୋଦ୍ୟୋଗୀ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଶିଳ୍ପ ପ୍ରତିଷ୍ଠା କରିଛନ୍ତି ତା' ନୁହେଁ, ସେମାନଙ୍କ ମଧ୍ୟରୁ କେତେକ ଜାତୀୟ ପୁରସ୍କାର ଲାଭ କରିବାର ଯୋଗ୍ୟତା ହାସଲ କରିଛନ୍ତି । ୧୯୮୪ ମସିହାର ଯେଉଁ ୩ ଜଣ ଶିଳ୍ପୋଦ୍ୟୋଗୀଙ୍କୁ ଜାତୀୟ ପୁରସ୍କାର ପ୍ରଦାନ କରାଯାଇଛି, ସେମାନଙ୍କ ମଧ୍ୟରେ କଳିଙ୍ଗ ଇଂଜିନିୟର୍ସର ମ୍ୟାନେଜିଂ ଡାଇରେକ୍ଟର ଶ୍ରୀ ଅଜିତ ମହାପାତ୍ର ଅନ୍ୟତମ ।

ପାରାଦୀପଠାରେ ପ୍ରତିଷ୍ଠିତ କଳିଙ୍ଗ ଇଞ୍ଜିନିୟର୍ସ କାରଖାନାଟିକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ୧୯୮୧ ମସିହା ମଇ ମାସ ୬ ତାରିଖରେ ଉଦ୍‌ଘାଟନ କରିଥିଲେ । ଏଥିପାଇଁ ୩୫ ଲକ୍ଷ ଟଙ୍କାର ମୂଳଧନ ବିନିଯୋଗ କରାଯାଇଛି ଏବଂ ଏଥିରୁ ବାର୍ଷିକ ୫୦ ଲକ୍ଷ ଟଙ୍କା ମୂଲ୍ୟର ଲୋହ ଆସବାବପତ୍ର ଓ ଗୃହ ସରଞ୍ଜାମ ଉତ୍ପାଦିତ ହେଉଛି । ଏଠାରେ ୧୧୦ ଜଣ ବ୍ୟକ୍ତିଙ୍କୁ ନିଯୁକ୍ତି ଦିଆଯାଇଛି । କାରଖାନା ପାଇଁ ୦·୦୨ ମେଗାଓ୍ୱାଟ୍ ବିଦ୍ୟୁତ୍‌ଶକ୍ତି ଆବଶ୍ୟକ ପଡ଼େ ।

ଏହି ପୁରସ୍କାର ଘୋଷଣା ପରେ ଶ୍ରୀ ମହାପାତ୍ର ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି କହିଛନ୍ତି ଯେ ଏହି ସମ୍ମାନ କେବଳ ତାଙ୍କ ପାଇଁ ଗୌରବ ଆଣିଦେଇ ନାହିଁ, ଏହା ରାଜ୍ୟ ସରକାରଙ୍କ ପାଇଁ ଏବଂ ରାଜ୍ୟର ଅନ୍ୟାନ୍ୟ ଶିଳ୍ପୋଦ୍ୟୋଗୀଙ୍କ ପାଇଁ ମଧ୍ୟ ଗୌରବର ବିଷୟ । ଶିଳ୍ପୋଦ୍ୟୋଗୀମାନେ ପରିଚାଳନା ଦକ୍ଷତା ବୃଦ୍ଧି କରି ଭବିଷ୍ୟତରେ ଅନୁରୂପ ପୁରସ୍କାର ଲାଭ କରିପାରିବେ ବୋଲି ସେ ଦୃଢ଼ ଆଶା ପୋଷଣ କରିଛନ୍ତି ।

---

## ରାଜ୍ୟରେ ପରିବାର କଲ୍ୟାଣ

ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ଆର୍ଥିକ ବର୍ଷର ଡିସେମ୍ବର ଶେଷ ସୁଦ୍ଧା ରାଜ୍ୟରେ ମୋଟ୍ ୭୮ ହଜାର ୯୯୮ ଜଣ ଜନ୍ମ ନିରୋଧ ଅସ୍ତ୍ରୋପଚାର କରିଛନ୍ତି । ସେମାନଙ୍କ ମଧ୍ୟରେ ୭୧ ହଜାର ୩୫୨ ଜଣ ମହିଳା ଅନ୍ତର୍ଭୁକ୍ତ । ଡିସେମ୍ବର ମାସରେ ୧୩ ହଜାର ୬୧୩ ଜଣ ମହିଳାଙ୍କ ସମେତ ମୋଟ୍ ୧୪ ହଜାର ୩୬୧ ଜଣ ଜନ୍ମ ନିରୋଧ ଅସ୍ତ୍ରୋପଚାର କରିଛନ୍ତି । ଏହି ମାସରେ ୨୦ ଜଣ ବିବାହିତା ମହିଳା 'ଲୁପ୍' ଓ ୭ ହଜାର ୧୬୮ ଜଣ ବିବାହିତା ମହିଳା 'କପର୍-ଟି' ଗ୍ରହଣ କରିଛନ୍ତି ଏବଂ ୭ ଲକ୍ଷ ୩୫ ହଜାର ୨୧୦ ଟି ଅନ୍ୟାନ୍ୟ ଜନ୍ମ ନିରୋଧ ସାମଗ୍ରୀ ବିବାହିତ ଦମ୍ପତିଙ୍କ ମଧ୍ୟରେ ବଣ୍ଟନ କରାଯାଇଛି ।

ରାଜ୍ୟରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମକୁ ଆହୁରି ଅଧିକ ଲୋକପ୍ରିୟ କରାଇବା ପାଇଁ ବିଭାଗ ତରଫରୁ ଡିସେମ୍ବର ମାସରେ ୪୧ଟି ଚଳଚ୍ଚିତ୍ର ପ୍ରଦର୍ଶନ, ୩୨ଟି ସାଂସ୍କୃତିକ କାର୍ଯ୍ୟକ୍ରମ ଓ ୨ଟି ପ୍ରଦର୍ଶନୀର ଆୟୋଜନ କରାଯାଇଥିଲା । ଏହା ବ୍ୟତୀତ ୨୪ ହଜାର ୯୪୯ ଟି ଶିକ୍ଷାସଂସ୍ଥା ଗଠନ, ୧୯ ଟି ସଭା ଓ ୬ ହଜାର

୭୭୨ ଟି ଆଲୋଚନା ଚକ୍ରର ଆୟୋଜନ କରାଯିବା ସଙ୍ଗେ ସଙ୍ଗେ ବିଭାଗୀୟ କର୍ମଚାରୀମାନେ ୨ ଲକ୍ଷ ୫୨ ହଜାର ୫୭ ଜଣଙ୍କୁ ବ୍ୟକ୍ତିଗତ ଭାବେ ସାକ୍ଷାତ କରି ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସଂପର୍କରେ ବୁଝାଇଥିଲେ ।

---

## ଶାରୀରିକ ଅକ୍ଷମ ଲୋକଙ୍କ ଥଇଥାନ

ଶାରୀରିକ ଅକ୍ଷମ ଲୋକଙ୍କର ଥଇଥାନ ପାଇଁ ରାଜ୍ୟ ତଥା କେନ୍ଦ୍ର ସରକାରଙ୍କ ତରଫରୁ ଶିକ୍ଷା ଓ ତାଲିମ ଦେଇ ସମାଜରେ ସୁନାଗରିକ କରିବାକୁ ବିଭିନ୍ନ କଲ୍ୟାଣକର ଯୋଜନା-ମାନ ବର୍ତ୍ତମାନ କାର୍ଯ୍ୟକାରୀ ହେଉଛି । ବୃତ୍ତି ଯୋଜନା ଏଗୁଡିକ ମଧ୍ୟରେ ଅନ୍ୟତମ । ରାଜ୍ୟରେ ଏହି ବୃତ୍ତି ପ୍ରଥମ ଶ୍ରେଣୀଠାରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଦିଆଯାଉଛି । ଏହି କାର୍ଯ୍ୟକ୍ରମ ଅନୁସାରେ ୧୯୮୩-୮୪ ମସିହାରେ ୩ ଲକ୍ଷ ୪୫ ହଜାର ଟଙ୍କା ବ୍ୟୟ କରାଯାଇଛି ଏବଂ ଏଥିରେ ୯୪୩ ଜଣ ଶାରୀରିକ ଅକ୍ଷମ ବ୍ୟକ୍ତି ଉପକୃତ ହୋଇଛନ୍ତି । ଚଳିତ ବର୍ଷ ଏ ବାବଦରେ ୫ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ବୋଲି ସ୍ଥିର କରାଯାଇଛି । ଏହା ବ୍ୟତୀତ ଶାରୀରିକ ଅକ୍ଷମ ଲୋକଙ୍କ ଶିକ୍ଷା ଓ ଧନ୍ଦାମୂଳକ ତାଲିମ ପାଇଁ ଚଳିତ ବର୍ଷ ରାଜ୍ୟର ୧୦ଟି ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ୧ ଲକ୍ଷ ୫୨ ହଜାର ଟଙ୍କା ଅନୁଦାନ ଆକାରରେ ଦିଆଯାଇଛି । ସହାୟକଯନ୍ତ୍ର, ତିନିଚକିଆ ସାଇକେଲ, ଆଖିବାଡ଼ି ଓ କୃତ୍ରିମ ଅଙ୍ଗପ୍ରତ୍ୟଙ୍ଗ କିଣିବା ପାଇଁ ୪୪ ଜଣଙ୍କୁ ୨୦ ହଜାର ଟଙ୍କା ଆର୍ଥିକ ସାହାଯ୍ୟ ଦିଆଯାଇଛି ।

ଗତ ଅକ୍ଟୋବର ଦୁଇ ତାରିଖ, ଗାନ୍ଧୀ ଜୟନ୍ତୀଠାରୁ ଶାରୀରିକ ଅକ୍ଷମ ଲୋକଙ୍କୁ ଭତ୍ତା ଯୋଜନା ଅନୁଯାୟୀ ମୋଟ୍ ୧୧ ଲକ୍ଷ ୯୧ ହଜାର ଟଙ୍କାର ବ୍ୟୟ ବ୍ୟବସ୍ଥା କରାଯାଇଛି । ଏହା ଫଳରେ ୧୦ ହଜାର ଶାରୀରିକ ଅକ୍ଷମ ବ୍ୟକ୍ତି ଉପକୃତ ହେବେ ।

ଏହା ବ୍ୟତୀତ କେନ୍ଦ୍ର ସରକାରଙ୍କ ସହାୟତାରେ ଭୁବନେଶ୍ୱରଠାରେ ଏକ ବୃତ୍ତିଗତ ଥଇଥାନ କେନ୍ଦ୍ର ସ୍ଥାପିତ ହୋଇଛି । ଶିକ୍ଷାବୃତ୍ତି ଯୋଜନା ଅନୁଯାୟୀ କେନ୍ଦ୍ର ସରକାର ମଧ୍ୟ ନବମ ଶ୍ରେଣୀଠାରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ସାଧାରଣ ଶିକ୍ଷା, ବିଭିନ୍ନ ବୈଷୟିକ, ବୃତ୍ତିଗତ ଏବଂ ଯାନ୍ତ୍ରିକ ବିଦ୍ୟା ତାଲିମ ପାଇଁ ବୃତ୍ତି ପ୍ରଦାନ କରୁଛନ୍ତି । ଏ ବାବଦରେ କେନ୍ଦ୍ର ସରକାର ୧୯୮୩-୮୪ରେ ୪ଲକ୍ଷ ୧୪ ହଜାର ଟଙ୍କା ଏବଂ ଚଳିତ ବର୍ଷ ୬ ଲକ୍ଷ ୭୭ ହଜାର ଟଙ୍କା ଦେଉଛନ୍ତି ।

---

## ଭୂମିହୀନଙ୍କୁ ସରକାରୀ ଜମି

ଭୂମିହୀନଙ୍କୁ ସରକାରୀ ଜମି ବଣ୍ଟନ କାର୍ଯ୍ୟକ୍ରମ ଅନୁଯାୟୀ ଗତ ଡିସେମ୍ବର ମାସ ସୁଦ୍ଧା ୬ ଲକ୍ଷ ୫୭ ହଜାର ଏକର ଜମି ବଣ୍ଟନ କରାଯାଇଛି । ଏହାଦ୍ୱାରା ସର୍ବମୋଟ୍ ୬ ଲକ୍ଷ ୭୭ ହଜାର ୫୭୪ ଜଣ ବ୍ୟକ୍ତି ଉପକୃତ ହୋଇଛନ୍ତି । ଏମାନଙ୍କ ମଧ୍ୟରେ ୩ ଲକ୍ଷ ୮୫ ହଜାର ୪୭୧ ଜଣଙ୍କୁ ୬ ଲକ୍ଷ ୩୮ ହଜାର ୨୯୨ ଏକର ଚାଷଜମି ଏବଂ ୨ ଲକ୍ଷ ୯୨ ହଜାର ୧୦୩ ଜଣଙ୍କୁ ୧୯,୧୧୧ ଏକର ଘରଡିହ ଯୋଗାଇ ଦିଆଯାଇଛି । କେବଳ ଚାଷଜମି ଦ୍ୱାରା ୧ ଲକ୍ଷ ୮୯ ହଜାର ୭୩ ଜଣ ଆଦିବାସୀ ଓ ୮୩,୩୯୦ ଜଣ ହରିଜନ ଏବଂ ଘରଡିହ ଦ୍ୱାରା ୯୬,୩୭୨ ଜଣ ଆଦିବାସୀ ଓ ୮୧,୪୫୫ ଜଣ ହରିଜନ ଉପକୃତ ହୋଇଛନ୍ତି ।

ଏହି କାର୍ଯ୍ୟ ଅନୁଯାୟୀ ୧୯୮୪ ମସିହା ଅପ୍ରେଲ ମାସଠାରୁ ଡିସେମ୍ବର ମାସ ଶେଷ ସୁଦ୍ଧା ୨୪,୧୯୪ ଜଣ ବ୍ୟକ୍ତି ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୬,୬୨୬ ଜଣଙ୍କୁ ୨୧,୮୮୪ ଏକର ଚାଷ ଜମି ଏବଂ ୭,୫୬୮ ଜଣଙ୍କୁ ୧,୮୭୮ ଏକର ଘରଡିହ ବଣ୍ଟନ କରାଯାଇଛି । ଏହି ସମୟ ମଧ୍ୟରେ କେବଳ ଚାଷଜମି ଦ୍ୱାରା ୧,୩୨୬ ଜଣ ଆଦିବାସୀ ଓ ୨,୬୨୬ ଜଣ ହରିଜନ ଏବଂ ଘରଡିହ ଦ୍ୱାରା ୩,୧୪୬ ଜଣ ଆଦିବାସୀ ଓ ୫,୫୬୯ ଜଣ ହରିଜନ ଉପକୃତ ହୋଇଛନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ବଣ୍ଟନ କରାଯାଇଥିବା ୬ ଲକ୍ଷ ୫୭ ହଜାର ୪୦୩ ଏକର ଚାଷଜମି ଓ ଘରଡିହ ମଧ୍ୟରୁ ୫ ଲକ୍ଷ ୭୫ ହଜାର ୩୮୨ ଏକର ଜମି ଚିହ୍ନଟ କରାଯାଇ ସଂପୃକ୍ତ ବ୍ୟକ୍ତିମାନଙ୍କୁ ଦଖଲ ଦିଆଯାଇଛି ।

## ସାହସିକତା ପାଇଁ ପୁରସ୍କୃତ

୧୬ ବର୍ଷର କମ୍ ବୟସର ଯେଉଁ ପିଲମାନଙ୍କୁ ସେମାନଙ୍କର ସାହସିକ କାର୍ଯ୍ୟ ପାଇଁ ଜାତୀୟ ପୁରସ୍କାର ପ୍ରଦାନ କରାଯାଇଛି ସେମାନଙ୍କର ମଧ୍ୟରେ ଓଡ଼ିଶାର ୨ଜଣ ଅଳ୍ପ ବୟସ ଛାତ୍ର ଶ୍ରୀ କରୁଣାକର ପ୍ରଧାନ ଓ ଶ୍ରୀ ଇମାମୁଦ୍ଦିନ୍ ଖାଁ ଅନ୍ତର୍ଭୁକ୍ତ ।

ଶ୍ରୀ କରୁଣାକର ପ୍ରଧାନ ସମ୍ବଲପୁର ଜିଲ୍ଲା ବରିହାପାଲି ଗ୍ରାମର ଶ୍ରୀ ମହେନ୍ଦ୍ର ପ୍ରଧାନଙ୍କ ପୁଅ । ବୟସ ୧୧ ବର୍ଷ । ସେ ବରିହାପାଲି ୟୁ. ଜି. ଏମ୍. ଇ. ସ୍କୁଲ ୫ମ ଶ୍ରେଣୀରେ ଅଧ୍ୟୟନ କରନ୍ତି । ଗତ ୨୯-୮-୧୯୮୪ ତାରିଖ ସକାଳେ ବରିହାପାଲିର କେତେକ ଶିଶୁ ଗାଁର ମହିମଣ୍ଡା ପୋଖରୀରେ ଗାଧୋଉଥିବା ବେଳେ ୮ ବର୍ଷର ପିଲା ସତ୍ୟବାନ୍ ସାହୁ ୭ ଫୁଟ ଗଭୀର ଜଳ ମଧ୍ୟକୁ ପ୍ରବେଶ କରି ଭଲ ପହଁରା ଜାଣି ନଥିବାରୁ କୂଳକୁ ଆସି ପାରି ନଥିଲେ ଏବଂ ସେଠାରେ ପାଣି ଭିତରେ ବୁଡି ଯାଉଥିବା ବେଳେ କରୁଣାକର ପ୍ରଧାନ ନିଜ ଜୀବନକୁ ବିପନ୍ନ କରି ଭିତରକୁ ଡେଇଁ ପଡି ସତ୍ୟବାନ୍ ସାହୁଙ୍କ ଜୀବନ ରକ୍ଷା କରିଥିଲେ । ତାଙ୍କର ଏହି ସାହସିକ କାର୍ଯ୍ୟ ପାଇଁ ତାଙ୍କୁ ଜାତୀୟ ପୁରସ୍କାର ପ୍ରଦାନ କରାଯାଇଛି ।

ଶ୍ରୀ ଇମାମୁଦ୍ଦିନ୍ ଖାଁ ପୁରୀ ଜିଲ୍ଲା ଅରଖପାଳୀ (ଭାୟା ବୋଲଗଡ) ନିବାସୀ ଶ୍ରୀ ଗୋଲମ ମୁର୍ତ୍ତାଜା ଖାଁଙ୍କ ପୁଅ । ବୟସ ୭ବର୍ଷ । ସେ ଅରଖପାଳୀସ୍ଥିତ ମଦ୍ରାସା ଇସ୍‌ଲାମିଆ ବିଦ୍ୟାଳୟରେ ତୃତୀୟ ଶ୍ରେଣୀରେ ଅଧ୍ୟୟନ କରନ୍ତି । ୧୯୮୪ ମସିହା ଅପ୍ରେଲ ମାସ ୧୨ ତାରିଖ ମଧ୍ୟାହ୍ନରେ ଘାଟବନ୍ଧ ପୋଖରୀ କୂଳରେ କେତେକ ପିଲା ଖେଳୁଥିବା ବେଳେ ୩ ବର୍ଷର ପିଲା ଓ୍ୱାଜିଉଦ୍ଦିନ୍ ପାଣି ଭିତରେ ଖସିପଡି ବୁଡି ଯାଉଥିବା ବେଳେ ଇମାମୁଦ୍ଦିନ୍ ପାଣି ଭିତରକୁ ପଶି ପିଲାଟିକୁ ଉଦ୍ଧାର କରିଥିଲେ । ରାଜ୍ୟ ଶିଶୁ ମଙ୍ଗଳ ପରିଷଦ ପକ୍ଷରୁ ଭାରତୀୟ ଶିଶୁ ମଙ୍ଗଳ ପରିଷଦକୁ ଏହି ସାହସୀ ବାଳକଙ୍କର ନାମ ଜାତୀୟ ସାହସିକ ପୁରସ୍କାର ପ୍ରଦାନ ପାଇଁ ସୁପାରିଶ କରାଯାଇଥିଲା ।

